# ଭୂମିକା

ତାଙ୍କ ଜନ୍ମଶତବାର୍ଷିକୀ ପାଳନ ଅବସରରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜୀବନ ଚରିତ ଲେଖିବା ପାଇଁ ମୋତେ ସୁଯୋଗ ମିଳି ଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି । ଆଜିକି ୫୫ବର୍ଷ ତଳେ ବିପ୍ଳବୀ ସୁଭାଷ ନାମ ଦେଇ ମୁଁ ନେତାଜୀଙ୍କ ଜୀବନୀ ଲେଖିଲା ବେଳେ ତାଙ୍କ ଆତ୍ମ ଜୀବନୀର ଗୋଟିଏ ଭାଗ Indian Struggle (ଭାରତବାସୀଙ୍କ ସ୍ୱାଧୀନତା ସଂଗ୍ରାମ) ପୁସ୍ତକ ଛଡ଼ା ତାଙ୍କ ଜୀବନୀ ସଂବନ୍ଧରେ ଜାଣିବା ପାଇଁ ଅନ୍ୟ କୌଣସି ପୁସ୍ତକ ମିଳୁ ନଥିଲା । ଏହି ପୁସ୍ତକଟି ମଧ୍ୟ ଲଣ୍ଡନରେ ପ୍ରକାଶ ପାଇବା ମାତ୍ରେ ବ୍ରିଟିଶ ସରକାର ଏହାର ଭାରତରେ ପ୍ରବେଶ ନିଷେଧ କରି ଦେଇଥିଲେ । କୌଣସିମତେ ଏହି ପୁସ୍ତକରୁ ଗୋପନୀୟ ସୂତ୍ରରୁ ଯୋଗାଡ କରି ତାକୁ ଲୁଚେଇ କରି ପଢି ଓଡିଆ ବହିଟି ଲେଖା ହୋଇଥିଲା । ସେତେବେଳକୁ ସେ ନେତାଜୀ ହୋଇ ନଥିଲେ ଜଣେ ବିପ୍ଳବୀ ଭାବରେ ପରିଚିତ ଥିଲେ । ତାଙ୍କ ଅନ୍ତର୍ଦ୍ଧାନର କାହାଣୀ, ବାଲ୍ୟ ଓ କୈଶୋର ଜୀବନର ବହୁ ଚିତ୍ତାକର୍ଷକ କାହାଣୀ ପରେ ଜଣା ପଡିଲା । ତଥାପି ମୋର ପ୍ରଥମ ପୁସ୍ତକଟି ବ୍ରିଟିଶ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଯିବା ପୂର୍ବରୁ ବହୁ ସଂଖ୍ୟାରେ ବିକ୍ରି ହୋଇ ଯାଇଥିଲା । ଏହା ଭିତରେ ବହୁ ବଙ୍ଗୀୟ ଲେଖକ ତାଙ୍କ ବାଲ୍ୟ ଓ ଛାତ୍ର ଜୀବନର ବହୁ ଚିତ୍ତାକର୍ଷକ ଓ ଶିକ୍ଷଣୀୟ କାହାଣୀ ସମ୍ବଳିତ ପୁସ୍ତକ ଲେଖିଛନ୍ତି । ନେତାଜୀଙ୍କ ଦ୍ୱାରା ଗଠିତ ଆଜାଦ୍‌ହିନ୍ଦ୍ ସରକାର ସହିତ ସଂପୃକ୍ତ ତାଙ୍କ ବିଶ୍ୱସ୍ତ ସହଯୋଗୀମାନେ ତାଙ୍କ ବିଷୟରେ ଚାଞ୍ଚଲ୍ୟକର ତଥ୍ୟମୂଳକ ପୁସ୍ତକମାନ ପ୍ରକାଶ କରିଛନ୍ତି । କେତେକ ବିଦେଶୀ ଲେଖକ ମଧ୍ୟ ତାଙ୍କ ସଂଗ୍ରାମୀ ଜୀବନ ସଂବନ୍ଧରେ ନୂତନ ଆଲୋକର ସନ୍ଧାନ ଦେଇଛନ୍ତି । ସର୍ବୋପରି କଲିକତାସ୍ଥ ନେତାଜୀ ଗବେଷଣା ପରିଷଦ ନେତାଜୀଙ୍କର ବହୁ ଚିଠିପତ୍ର ସହ ସାତଖଣ୍ଡରେ ବିଭକ୍ତ ତାଙ୍କ ଜୀବନ ଚରିତ ପ୍ରକାଶ କରିଛନ୍ତି । ଏହି ସବୁ ଗ୍ରନ୍ଥରେ ନେତାଜୀଙ୍କ ଦୀର୍ଘ କର୍ମମୟ ଜୀବନର ଘଟଣାବଳୀ ଲୋକ ଲୋଚନକୁ ଆସିଛି ।

ଭାରତ ଇତିହାସରେ ନେତାଜୀ ସୁଭାଷଚନ୍ଦ୍ର ଥିଲେ ଏକ ଅସାଧାରଣ ବ୍ୟକ୍ତିତ୍ୱ । ତାଙ୍କର ସମଗ୍ର ଜୀବନକାଳ ଭିତରେ ନିଜ ବୁଦ୍ଧି ଓ ବିଚାରରେ ପରିଚାଳିତ ହୋଇ ଅନେକ ବାଟରେ ପୃଥକ ହୋଇଥିଲେ । କୈଶୋର ଜୀବନରେ ସେ ସ୍ୱାମୀ ବିବେକାନନ୍ଦଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇ ଯେପରି ସମୟ ସମୟରେ ପିତାମାତାଙ୍କର ବେଳେ ବେଳେ ଅବାଧ୍ୟ ହୋଇଥିଲେ; ପିତାଙ୍କ କଥାମାନି ଆଇ.ସି.ଏସ୍. ପରୀକ୍ଷା ଦେଇଥିଲେ ମଧ୍ୟ ସେଥିରେ ଉତ୍ତୀର୍ଣ୍ଣ ହେବା ପରେ ପୁଣି ପିତାଙ୍କ କଥା ନମାନି ସେଥିରୁ ଇସ୍ତଫା ଦେଇଥିଲେ ଏବଂ ନିଜର ପଥ ବାଛି ନେଇଥିଲେ । ପରବର୍ତ୍ତୀ ରାଜନୈତିକ ଜୀବନରେ ଭାରତର ସର୍ବମାନ୍ୟ ଜାତୀୟ ନେତା ମହାତ୍ମାଗାନ୍ଧୀଙ୍କ ପ୍ରଦର୍ଶିତ ପଥରେ ଚାଲିବାକୁ ରାଜି ନହୋଇ ଭିନ୍ନପଥ ବାଛି ନେଇ ଥିଲେ । ମାତ୍ର ଦେଶର ଯେକୌଣସି ବ୍ୟକ୍ତିଙ୍କଠାରୁ ମହାତ୍ମାଗାନ୍ଧୀଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ତିଳେ ହେଲେ ଊଣା ନଥିଲା କି ନେତାଜୀଙ୍କ ଦେଶ ପ୍ରେମ ନିଷ୍ଠାରେ ଗାନ୍ଧିଜୀଙ୍କର ତିଳେମାତ୍ର

ସନ୍ଦେହ ନଥିଲା । ସେହିପରି କୈଶୋର ଜୀବନରେ ଅବାଧ୍ୟ ଓ ଖାମଖିଆଲ ସୁଭାଷଙ୍କ ପ୍ରତି ପିତାମାତାଙ୍କର ଅନ୍ୟ ତେରଜଣ ପୁତ୍ରକନ୍ୟାଙ୍କଠାରୁ ବାତ୍ସଲ୍ୟ ମମତା ତିଳେହେଲେ ଊଣା ନଥିଲା ।

ଏହିପରି ଏକ ଅସାଧାରଣ ବୈଚିତ୍ର୍ୟମୟ ବ୍ୟକ୍ତିତ୍ୱର ନିଖୁଣ ଚିତ୍ର ଉପସ୍ଥାପିତ କରିବା ସହଜ ନୁହେଁ । ଯେଉଁମାନେ ଜୀବନରେ ଚଲାପଥର ପଥିକ ହୋଇଛନ୍ତି, ସେମାନଙ୍କ ଜୀବନ ଚରିତ ବର୍ଣ୍ଣନା ଅପେକ୍ଷାକୃତ ସହଜ, ଅମଡା ପଥର ପଥିକ ହୋଇଥିବାରୁ ହିଁ ସେ ଅଧିକ ଆକର୍ଷଣୀୟ ହୋଇଥିଲେ । ଅମଡା ପଥର ପଥିକ ହେବାଭଳି ଅସାମାନ୍ୟ ପ୍ରତିଭା, ଦେଶ ପ୍ରେମ, ତ୍ୟାଗ, ନିଷ୍ଠା, ସାହସ ଓ ସଂଗଠନ ଶକ୍ତି ତାଙ୍କର ଥିଲା ।

ନେତାଜୀ ସୁଭାଷଚନ୍ଦ୍ରଙ୍କ ପିତା ସେତେବେଳର ବିଶିଷ୍ଟ ଆଇନଜୀବୀ ଓ ସମାଜ ସେବୀ ଜାନକୀନାଥ ବୋଷଙ୍କର ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନ ସହିତ ଘନିଷ୍ଠ ସଂପର୍କ ଥିଲା । ନେତାଜୀ ସୁଭାଷ ଚନ୍ଦ୍ରଙ୍କ ବାଲ୍ୟ ଓ କୈଶୋର ଜୀବନର ଷୋଳବର୍ଷ ପର୍ଯ୍ୟନ୍ତ କଟକରେ ଅତିବାହିତ ହୋଇଥିଲା । ପରବର୍ତ୍ତୀ ସମୟରେ ଲିଖିତ ତାଙ୍କ ପିତା ଓ ତାଙ୍କ ବିଷୟରେ ବହୁ ଚିତ୍ତାକର୍ଷକ ଓ ଶିକ୍ଷଣୀୟ ଘଟଣା ସଂଗ୍ରହ କରି ମୁଁ ଏହି ପୁସ୍ତକରେ ସନ୍ନିବେଶିତ କରିଛି । ନେତାଜୀଙ୍କ ରାଜନୈତିକ ଜୀବନର ବିଭିନ୍ନ ପର୍ଯ୍ୟାୟରେ ଓଡ଼ିଶା ରାଜନୀତିଜ୍ଞମାନଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଥିଲା । ଏ ସଂପର୍କରେ ମୋର ଯେଉଁ ପ୍ରତ୍ୟକ୍ଷ ଜ୍ଞାନଥିଲା ଓ ବନ୍ଧୁମାନଙ୍କଠାରୁ ସଂଗ୍ରହ କରି କିଛି ତଥ୍ୟ ଉଲ୍ଲେଖ କରିଛି ।

ମାନ୍ୟବର ରାଜ୍ୟପାଳଙ୍କ ଅଧ୍ୟକ୍ଷତାରେ ଗଠିତ ନେତାଜୀଙ୍କ ଜନ୍ମଶତବାର୍ଷିକୀ କମିଟିର ପ୍ରଥମ ବୈଠକରେ କମିଟିର ସଭ୍ୟମାନଙ୍କ ମତାମତ କ୍ରମେ ରାଜ୍ୟ ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜୀବନୀ ଲେଖିଦେବା ପାଇଁ ମୋତେ ବରାଦ ଦେଇ ଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ । ପୁସ୍ତକଟି ଅଧିକ ଲୋକଙ୍କ ନିକଟରେ ପହଞ୍ଚି ପାରିଲେ ମୋର ଶ୍ରମ ସାର୍ଥକ ହେବ ।

୧୧୩, ବାପୁଜୀନଗର,
ଭୁବନେଶ୍ୱର - ୯

ବିନୀତ
**ବଳରାମ ମହାନ୍ତି**

# ନେତାଜୀ ସୁଭାଷ ଚନ୍ଦ୍ର ବୋଷ

ପୌରାଣିକ କିମ୍ବଦନ୍ତୀ ବୀରପୁରୁଷଙ୍କ ପରି ତାଙ୍କ ଜୀବନ ଚରିତ । ଶୈଶବର୍ଷ ତଳେ ଯିଏ କଟକ ସହରର ଓଡିଆ ବଜାରରେ ମୁସଲମାନ ପିଲାଙ୍କ ସାଙ୍ଗରେ ବସି ଧୂଳି ଖେଳୁଥିଲେ, ସେମାନଙ୍କ ସାଙ୍ଗରେ କଲିଜିଏଟ୍ ସ୍କୁଲକୁ ଯାଉଥିଲେ, କଲିଜିଏଟ୍ ସ୍କୁଲଛାତ୍ର ଥିଲାବେଳେ କଟକ ସହରର ହଇଜା ଓ ବସନ୍ତ ରୋଗୀଙ୍କ ଘରକୁ ଯାଇ ତାଙ୍କ ସେବା କରୁଥିଲେ, କଲିକତାର ପ୍ରେସିଡେନ୍‌ସି କଲେଜରେ ଅଧ୍ୟୟନ କରୁଥିଲା ବେଳେ ଅଧ୍ୟାପକଙ୍କ ଅନ୍ୟାୟ ଆଚରଣ ବିରୁଦ୍ଧରେ ଛାତ୍ରମାନଙ୍କୁ ମେଳି କରି କଲେଜରୁ ବହିଷ୍କୃତ ହୋଇଥିଲେ, ଘରେ କାହାକୁ କିଛି ନକହି ଚାଲିଯାଇ ଆଧ୍ୟାତ୍ମିକ ଗୁରୁଙ୍କ ସନ୍ଧାନରେ ଭାରତରେ ତୀର୍ଥସ୍ଥାନମାନ ଭ୍ରମଣ କରିଥିଲେ, ଅତି ଲୋଭନୀୟ ଆଇ.ସି.ଏସ. ଚାକିରିରୁ ଇସ୍ତଫା ଦେଇ ସ୍ୱାଧୀନତା ସଂଗ୍ରାମୀ ହୋଇଥିଲେ, ଦ୍ୱିତୀୟ ମହାଯୁଦ୍ଧବେଳେ ଭାରତରୁ ହଠାତ୍ ଅନ୍ତର୍ଦ୍ଧାନ ହୋଇଯାଇ ଦୁର୍ଗମ ଗିରିକାନ୍ତାର ଲଙ୍ଘି ବିଦେଶରେ ଥିବା ଭାରତୀୟମାନଙ୍କୁ ନେଇ ଜାତୀୟ ସୈନ୍ୟ ବାହିନୀ ଗଠନ କରି ବ୍ରିଟିଶ ବିରୋଧୀ ଶକ୍ତିଙ୍କ ସହଯୋଗରେ ଭାରତକୁ ବ୍ରିଟିଶ ଶାସନରୁ ମୁକ୍ତ କରିବା ପାଇଁ ଭାରତ ଭୂମିରେ ପଦାର୍ପଣ କରିଥିଲେ, ସେହି ଅସାଧାରଣ ସ୍ୱଦେଶପ୍ରେମୀ, ତ୍ୟାଗୀ, ସାହସୀ, ସୁଦକ୍ଷ ସଂଗଠକ ନେତାଜୀ ସୁଭାଷ ଚନ୍ଦ୍ରଙ୍କ ଜୀବନ ଚରିତ ଯେପରି ଚିତ୍ତାକର୍ଷକ ସେହିପରି ପ୍ରେରଣା ଦାୟକ ।

## ପିତା ଓ ପୁତ୍ର

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ବ୍ରିଟିଶ ସରକାର ବିରାଟ ଓଡିଆ ଭାଷୀ ଅଞ୍ଚଳକୁ ଖଣ୍ଡଖଣ୍ଡକରି ଚାରୋଟି ପଡୋଶୀ ପ୍ରଦେଶ ସହିତ ଯୋଡି ଦେଇଥିଲେ । ୧୮୦୪ ମସିହାରେ ସବାଶେଷରେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାକୁ ଘେନି ଗଠିତ ଓଡିଶା ଡିଭିଜନ ବଙ୍ଗ ପ୍ରଦେଶ ସହିତ ଯୋଡି ହୋଇ ରହିଲା । ଓଡ଼ିଶା ଡିଭିଜନ ଏହିପରି ଶତାଧିକ ବର୍ଷକାଳ ବଙ୍ଗ ପ୍ରଦେଶ ସହିତ ରହିବା ଭିତରେ ବଙ୍ଗ ପ୍ରଦେଶରୁ ବହୁ ଜମିଦାର ଓ ବୁଦ୍ଧିଜୀବୀ ଆସି ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ବସବାସ କରି ରହିଲେ । ସେମାନଙ୍କ ଭିତରୁ କେତେକ ଆଇନଜୀବୀ ଓ ସରକାରୀ କର୍ମଚାରୀ ଓଡିଶାର ସାମାଜିକ ଓ ସାଂସ୍କୃତିକ ବିକାଶ ନିମନ୍ତେ ନିଷ୍ଠାର ସହିତ କାର୍ଯ୍ୟ କରି ସୁଖ୍ୟାତି ଅର୍ଜନ କରିଥିଲେ । ଏକ୍ଷେତ୍ରରେ କର୍ମବୀର ଗୌରୀଶଙ୍କର ରାୟ, ନାଟ୍ୟକାର ରାମଶଙ୍କର ରାୟ ଓ କବିବର ରାଧାନାଥ ରାୟଙ୍କ ନାମ ଉଲ୍ଲେଖ ଯୋଗ୍ୟ । ସେତେବେଳେ ଯେଉଁ ସବୁ ବିଶିଷ୍ଟ ବଙ୍ଗୀୟ ବ୍ୟକ୍ତି କଟକରେ ବସବାସ କରି ଓକିଲାତି କରିଥିଲେ, ସେମାନଙ୍କ ଭିତରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପିତା ଜାନକୀ ନାଥ ବୋଷ ଥିଲେ ଅନ୍ୟତମ ।

କଟକରେ ବସବାସ କରିବା ପୂର୍ବରୁ ଜାନକୀନାଥ ବୋଷ ତାଙ୍କ ବଡଭାଇ ଦେବେନ୍ଦ୍ରନାଥ ବୋଷଙ୍କ ସାଙ୍ଗରେ କଟକ ଆସି ରେଭେନ୍ସା କଲେଜରେ ଏଫ.ଏ ଓ ବି.ଏ. ଅଧ୍ୟୟନ କରିଥିଲେ । ସେଠାରେ ସେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ରରାୟଙ୍କର ସହପାଠୀ ଥିଲେ । ବୁଦ୍ଧିଜୀବୀ ଗିରିଶ ଚନ୍ଦ୍ର ବୋଷ ଓ ବ୍ୟୋମକେଶ ଚକ୍ରବର୍ତ୍ତୀ ପ୍ରମୁଖ ରେଭେନ୍ସା କଲେଜରେ ତାଙ୍କର ଶିକ୍ଷକ ଥିଲେ । ରେଭେନ୍ସା କଲେଜରେ ଅଧ୍ୟୟନ ଶେଷକରି ଜାନକୀନାଥ ଆଇନ କଲେଜରେ ଅଧ୍ୟୟନ କଲେ ଏବଂ ସେଠାରେ କିଛିଦିନ ଶିକ୍ଷକତା କରିଥିଲେ । ତାପରେ ସେ କଟକ ଆସି ରାୟ ବାହାଦୁର ହରି ବଲ୍ଲଭ ଘୋଷଙ୍କ ସହାୟତାରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ ଓ କଟକର ଓଡିଆ ବଜାରରେ ବାସଭବନ ନିର୍ମାଣ କରି ବସବାସ କରି ରହିଲେ ।

ଅଳ୍ପଦିନ ଭିତରେ ସେ ଜଣେ ପ୍ରତିଷ୍ଠିତ ଆଇନଜୀବୀ ଭାବରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେତେବେଳର ପବଲିକ୍ ପ୍ରୋସିକିଉଟର ହରିବଲ୍ଲଭ ଘୋଷଙ୍କ ମୃତ୍ୟୁପରେ ୧୯୦୧ ମସିହାରେ ଜାନକୀନାଥ ବୋଷ ପବ୍ଲିକ ପ୍ରୋସିକିଉଟର ଭାବରେ ସରକାର ତାଙ୍କୁ ନିଯୁକ୍ତି କଲେ । ସେ ମଧ୍ୟ ସରକାରୀ ଓକିଲ ଭାବରେ କାର୍ଯ୍ୟ କରିଥିଲେ । ଅଳ୍ପଦିନ ଭିତରେ ସେ ଜଣେ ସମାଜସେବୀ ଭାବରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସେଥିପାଇଁ ଜାନକୀନାଥ ୧୯୦୧ ମସିହାରେ କଟକ ମ୍ୟୁନିସିପାଲିଟିର ପ୍ରଥମ ଚେଆରମେନ ନିଯୁକ୍ତ ହେଲେ । ସେ ଥିଲେ କଟକ ମ୍ୟୁନିସିପାଲିଟିର ସର୍ବପ୍ରଥମ ବେସରକାରୀ ଚେଆରମେନ୍ । ୧୯୧୨ ମସିହାରେ ସେ ବଙ୍ଗୀୟ ବ୍ୟବସ୍ଥାପକ ସଭାର ଜଣେ ସଭ୍ୟ ଭାବରେ ମନୋନୀତ ହୋଇଥିଲେ । ୧୯୧୬ ମସିହାରେ ସେ ସରକିଟ୍ କୋର୍ଟର ସରକାରୀ ଓକିଲ ଭାବରେ ନିଯୁକ୍ତ ହୋଇଥିଲେ । ଆଇନ୍ ବ୍ୟବସାୟରେ ସୁଖ୍ୟାତି ତଥା ସାମାଜିକ କାର୍ଯ୍ୟରେ ସୁଖ୍ୟାତି ଯୋଗୁ ସରକାର ତାଙ୍କୁ ରାୟବାହାଦୁର ଉପାଧିରେ ଭୂଷିତ କରିଥିଲେ । ୧୯୧୭ ମସିହାରେ କଟକ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ସହିତ ତାଙ୍କର ମତଭେଦ ଯୋଗୁ ସେ ସରକାରୀ ଓକିଲ ପଦ ତ୍ୟାଗ କଲେ ଏବଂ ଏହାର ୧୩ ବର୍ଷ ପରେ ୧୯୩୦ ମସିହାରେ ଭାରତରେ ସ୍ୱାଧୀନତା ସଂଗ୍ରାମ ବେଳେ ବ୍ରିଟିଶ ସରକାରଙ୍କ ନିଷ୍ଠୁର ଦମନଲୀଳା ଓ ବେଆଇନ କାର୍ଯ୍ୟର ପ୍ରତିବାଦରେ ଜାନକୀବାବୁ ରାୟ ବାହାଦୁର ଉପାଧି ଫେରାଇ ଦେଇଥିଲେ ।

ଭାରତରେ ଜାତୀୟ କଂଗ୍ରେସ ଅନୁଷ୍ଠାନ ପ୍ରତି ଜାନକୀ ନାଥ ବୋଷ ପ୍ରଥମରୁ ଅନୁରକ୍ତ ଥିଲେ । ସେ ସରକାରୀ ଓକିଲ ଥାଇ ମଧ୍ୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଓଡ଼ିଶା ଡିଭିଜନର ଜଣେ ପ୍ରତିନିଧି ଭାବରେ ନିୟମିତ ଭାବରେ ଯୋଗ ଦେଇ ଆସୁଥିଲେ । ସେଥିପାଇଁ ସେ ସରକାରୀ କର୍ମକର୍ତ୍ତାଙ୍କ ବିଷ ଦୃଷ୍ଟିରେ ପଡିଥିଲେ । ମାତ୍ର ସେଥିପାଇଁ ସେ ଭ୍ରୂକ୍ଷେପ କରିନଥିଲେ । ସେ ଖଦିବସ୍ତ୍ର ଓ ସ୍ୱଦେଶୀ ଜିନିଷ ବ୍ୟବହାରର ପକ୍ଷପାତି ଥିଲେ । ଏହାଛଡ଼ା ସେତେବେଳେ ସେ ଓଡିଶାର ବିଭିନ୍ନ ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟର ଉନ୍ନତି ଦିଗରେ ସକ୍ରୀୟ ଅଂଶ ଗ୍ରହଣ କରିଥିଲେ । ସେତେବେଳେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଦ୍ୱାରା ସାକ୍ଷୀଗୋପାଳଠାରେ ପ୍ରତିଷ୍ଠିତ ବନ ବିଦ୍ୟାଳୟର ପରିଚାଳନା ସହିତ ସକ୍ରୀୟ ଭାବରେ ସେ ସଂପୃକ୍ତ ଥିଲେ । ସର୍ବୋପରି ସେ ଜଣେ ବଦାନ୍ୟ ବ୍ୟକ୍ତିଥିଲେ । ଓଡ଼ିଶାର ବହୁ ସ୍କୁଲ ଓ କଲେଜ ଛାତ୍ର ତାଙ୍କ ଆର୍ଥିକ ସାହାଯ୍ୟରେ ଅଧ୍ୟୟନ କରୁଥିଲେ । ସେ ମୃତ୍ୟୁ ପୂର୍ବରୁ ତାଙ୍କ ପରିବାରର ଭୃତ୍ୟମାନଙ୍କ ପାଇଁ ପେନସନ ବ୍ୟବସ୍ଥା କରିଦେଇ ଯାଇଥିଲେ । ଦାନ ବିଷୟକୁ ସେ ସବୁବେଳେ ଗୋପନୀୟ ରଖୁଥିଲେ । ସେ ଧର୍ମ ପରାୟଣ ବ୍ୟକ୍ତିଥିଲେ । ସେ ଓ ତାଙ୍କର ସହଧର୍ମିଣୀ ଶ୍ରୀମତୀ ପ୍ରଭାବତୀ ଦେବୀ ଠାକୁର ଅନୁକୂଳ ଚନ୍ଦ୍ରଙ୍କ ସତ୍‌ସଙ୍ଗରେ ଯୋଗ ଦେଇଥିଲେ । ତାଙ୍କର ଭଗବତ ବିଶ୍ୱାସ ଯୋଗୁଁ ହିଁ ଜାନକୀନାଥ ବହୁ ଆତ୍ମୀୟଙ୍କ ବିୟୋଗରେ ବିଚଳିତ ହୋଇ ନଥିଲେ କି ସୁଯୋଗ୍ୟପୁତ୍ର ସୁଭାଷ ଚନ୍ଦ୍ର ଓ ଶରତଚନ୍ଦ୍ରଙ୍କ କାରାବରଣରେ ବିଚଳିତ ହୋଇ ନଥିଲେ ବରଂ ସେମାନଙ୍କ ପାଇଁ ସେ ଗର୍ବ ଅନୁଭବ କରିଥିଲେ ।

ଏହିପରି ଜଣେ ଉଚ୍ଚକୋଟିର ଆଇନଜୀବୀ, ପରଦୁଃଖକାତର, ସମାଜସେବୀ ଓ ଧର୍ମପରାୟଣ ବ୍ୟକ୍ତି ଜାନକୀନାଥ ବୋଷଙ୍କର ସୁଭାଷଚନ୍ଦ୍ର ବୋଷ ଥିଲେ ନବମ ସନ୍ତାନ ଓ ଷଷ୍ଠପୁତ୍ର । ତାଙ୍କ ମାତା ଶ୍ରୀମତୀ ପ୍ରଭାବତୀ ଦେବୀ ଥିଲେ ଶିକ୍ଷିତ ପରିବାରର କନ୍ୟା । ତାଙ୍କର ୮ଟି ପୁତ୍ର ଓ ଛଟି କନ୍ୟା ଥିଲେ ।

## ସୁଭାଷଙ୍କର ବାଲ୍ୟଜୀବନ

ସୁଭାଷଚନ୍ଦ୍ର ତାଙ୍କ ଆତ୍ମ ଜୀବନୀରେ ଲେଖିଛନ୍ତି ଯେ ପିଲାଦିନେ ସେ ପିତା ମାତାଙ୍କ ଦ୍ୱାରା ଅବହେଳିତ ହେଲାଭଳି ଅନୁଭବ କରୁଥିଲେ । ଗୋଟିଏ ବହୁ କୁଟୁମ୍ବୀ ପରିବାରର ସନ୍ତାନ ହୋଇଥିବାରୁ ସେ ବୋଧହୁଏ ଏହିପରି ଅନୁଭବ କରୁଥିଲେ । ଏତେଗୁଡିଏ ପିଲାଙ୍କୁ

ପିତାମାତା ସମାନ ଦୃଷ୍ଟିରେ ଦେଖୁଥିଲେ ତେଣୁ କାହାରି ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇନଥିଲା । ଗୋଟିଏ ଦୁଇଟି ପିଲା ହୋଇନଥିଲେ ସେମାନେ ତାଙ୍କ ପ୍ରତି ଯେପରି ସ୍ନେହ ଶ୍ରଦ୍ଧା କରିଥାନ୍ତେ ତାହା ତାଙ୍କ ପରିବାରରେ ସମ୍ଭବ ହୋଇ ନଥିବାରୁ ଏହିପରି ଅନୁଭବ କରୁଥିଲେ । ପିଲାଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ଓ ମମତା ଥିଲେ ମଧ୍ୟ ତାଙ୍କ ପିତା କଡା ପ୍ରକୃତିର ବ୍ୟକ୍ତି ଥିଲେ ତେଣୁ ପିଲାମାନେ ସବୁବେଳେ ତାଙ୍କ ଠାରୁ ଦୂରରେ ରହୁଥିଲେ । ତାଛଡ଼ା ଆଇନ ବ୍ୟବସାୟ ତଥା ସମାଜସେବା କାର୍ଯ୍ୟରେ ତାଙ୍କ ପିତାଙ୍କର ଅଧିକାଂଶ ସମୟ ଅତିବାହିତ ହେଉଥିଲା । ତେଣୁ ପିଲାଙ୍କ କଥା ବୁଝିବା ପାଇଁ ତାଙ୍କର ସମୟ ଥାଏ ଅଳ୍ପ । ପିଲାଙ୍କ ଲାଳନପାଳନର ଦାୟିତ୍ୱ ପଡୁଥିଲା ମାଙ୍କ ଉପରେ । ଶ୍ରଦ୍ଧା ଓ ଦକ୍ଷତାର ସହିତ ମା ପ୍ରଭାବତୀ ଦେବୀ ପିଲାମାନଙ୍କୁ ଚଳେଇ ଥିଲେ ।

ପିଲାଦିନୁ ସୁଭାଷ ଶାରୀରିକ ଶ୍ରମର ମର୍ଯ୍ୟାଦା ଶିଖିଥିଲେ । ତାଙ୍କ ଘରକୁ ଲାଗି ବଡ ବଗିଚାଟିଏ ଥିଲା । ସେଥିରେ ବହୁ ଫୁଲ ଫଳ ଗଛ ଥିଲା । ସେଥିରେ ପାଣି ଦେବାକୁ ତଥା ଗଛର ଯତ୍ନ ନେବାକୁ ମାଳି ଥାଏ ମାତ୍ର ସୁଭାଷ ତାଙ୍କର ଅନ୍ୟ ଭାଇଙ୍କ ସାଙ୍ଗରେ ପ୍ରତିଦିନ ଗଛରେ ପାଣି କାଢି ଦିଅନ୍ତି । ମାଟି ହାଣି ଗଛ ଲଗାନ୍ତି ଓ ବଗିଚାରେ ଅନ୍ୟାନ୍ୟ କାର୍ଯ୍ୟ କରନ୍ତି । ମାତ୍ର ପିତାଙ୍କର କଡାଦୃଷ୍ଟି ଯୋଗୁ ସେ ବାହାରକୁ ଖେଳିବାକୁ ଯାଇ ପାରନ୍ତି ନାହିଁ ।

## ତାଙ୍କ ପ୍ରାଥମିକ ଶିକ୍ଷାବେଳେ ଅନୁଭୂତି

ପ୍ରାଥମିକ ଶିକ୍ଷା ପାଇଁ ପାଞ୍ଚବର୍ଷ ବୟସରେ ୧୯୦୨ ମସିହାରେ ସୁଭାଷଚନ୍ଦ୍ରଙ୍କର କଟକର ପ୍ରୋଟେଷ୍ଟାଣ୍ଟ ମିସନାରୀ ସ୍କୁଲରେ ନାମଲେଖା ହେଲା । ଏହିଠାରେ ତାଙ୍କର ସବୁଭାଇ ଭଉଣୀଯାକ ଅଧ୍ୟୟନ କରିଥିଲେ । ଏହି ମିଶନାରୀ ବିଦ୍ୟାଳୟଟି ମୁଖ୍ୟତଃ ଇଉରୋପୀୟ ଓ ଆଙ୍ଗ୍ଲୋଇଣ୍ଡିୟାନ ଛାତ୍ରଙ୍କ ଶିକ୍ଷା ଉଦ୍ଦେଶ୍ୟରେ ହିଁ ପ୍ରତିଷ୍ଠିତ ହୋଇଥିଲା । ଭାରତୀୟ ଛାତ୍ରଙ୍କ ପାଇଁ ମାତ୍ର ୧୫ ପ୍ରତିଶତ ସ୍ଥାନ ଥାଏ । ମୁଖ୍ୟତଃ ଇଂରେଜୀ ଭାଷା ଚଞ୍ଚଳ ଓ ଭଲ ଭାବରେ ଶିଖିଯିବା ଉଦ୍ଦେଶ୍ୟରେ ହିଁ ତାଙ୍କ ପିତା ଏହି ବିଦ୍ୟାଳୟଟିକୁ ତାଙ୍କର ପ୍ରାଥମିକ ଶିକ୍ଷା ପାଇଁ ମନୋନୀତ କରିଥିଲେ । ଏହି ବିଦ୍ୟାଳୟରେ ସମସ୍ତ ବିଷୟ ଇଂରେଜୀ ଭାଷା ମାଧ୍ୟମରେ ଶିକ୍ଷା ଦିଆହେଉଥିଲା ଏବଂ କୌଣସି ଭାରତୀୟ ଭାଷା ଶିକ୍ଷା ଦିଆହେଉ ନଥିଲା । ଯେଉଁ ଇତିହାସ ଓ ଭୂଗୋଳ ପାଠ୍ୟପୁସ୍ତକ ଥିଲା ସେଥିରେ ଇଂଲଣ୍ଡ ଦେଶର ଇତିହାସ ଓ ଭୂଗୋଳ ବିଷୟ ମୁଖ୍ୟତଃ ଥିଲା ଓ ଭାରତବର୍ଷ ସଂବନ୍ଧରେ ଅତି ଅଳ୍ପ ବିଷୟ ରହିଥିଲା । ତେଣୁ ସୁଭାଷ ପିଲାଦିନୁ ମାତୃଭାଷା ଜରିଆରେ ଶିକ୍ଷା ପାଇବାର ସୁଯୋଗ ପାଇ ପାରିନଥିଲେ ! ମାତ୍ର ଏହି ବିଦ୍ୟାଳୟରେ ଅଧ୍ୟୟନ କରିବାରେ ତାଙ୍କର କୌଣସି ଦୁଃଖ ନଥିଲା । ଇଂରେଜୀ ଭାଷା ଶିକ୍ଷା କରିବା ସଙ୍ଗେ ସଙ୍ଗେ ସେ ଏଠାରେ ଶୃଙ୍ଖଳା, ନିୟମାନୁବର୍ତ୍ତିତା, ଚରିତ୍ର ଗଠନ ଆଦି ଶିକ୍ଷା କରିଥିଲେ ଏବଂ ତାହା ତାଙ୍କ ଭବିଷ୍ୟତ ଜୀବନ ଗଠନ ପାଇଁ ପାଥେୟ ହୋଇଥିଲା । ସ୍କୁଲଛାତ୍ରଙ୍କ ଭିତରେ ତାଙ୍କର ସୁନାମଥିଲା ଓ ଶିକ୍ଷକମାନେ ତାଙ୍କ ପରିବାରର ପିଲାଙ୍କୁ ଶ୍ରଦ୍ଧା କରୁଥିଲେ କାରଣ ସେମାନେ ପରୀକ୍ଷାରେ ସର୍ବୋଚ୍ଚ ସ୍ଥାନ ଅଧିକାର କରୁଥିଲେ । ସେ ଅଳ୍ପ ଦିନ ଭିତରେ ଇଂରେଜୀ ଭାଷାରେ ଭଲ କହି ପାରୁଥିଲେ ଓ ଲେଖି ପାରୁଥିଲେ ।

ତଥାପି ସୁଭାଷ ଏହି ବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ଇଂରେଜ ଓ ଭାରତୀୟଙ୍କ ଭିତରେ ଯେ ପାତର ଅନ୍ତର ସୃଷ୍ଟି କରାଯାଉଛି ଏବଂ ଭାରତୀୟ ପିଲାମାନଙ୍କୁ ଇଂରେଜୀ ପିଲାଙ୍କଠାରୁ ନ୍ୟୂନ ବୋଲି ବିଚାର କରାଯାଉଛି ତାହା ସେ ସେଠାରେ ଅନୁଭବ କରିଥିଲେ । ଘଟଣା ଚକ୍ରରେ ପରବର୍ତ୍ତୀ ସମୟରେ ତାଙ୍କର ଏକ ଧାରଣା କ୍ରମଶଃ ଦୃଢ ହେଲା । ଏହି ବିଦ୍ୟାଳୟର ଭାରତୀୟ ଛାତ୍ରମାନଙ୍କୁ ବୃତ୍ତି ପରୀକ୍ଷା ଦେବାକୁ ଅନୁମତି ଦିଆଯାଉ ନଥିଲା । କେବଳ ଇଂରେଜ ଓ ଆଙ୍ଗ୍ଲୋ ଇଣ୍ଡିଆନ ପିଲାମାନେ ଏହି ସୁବିଧା ପାଉଥିଲେ । ସେହିପରି ଭାରତୀୟ ଛାତ୍ରମାନଙ୍କୁ

ସ୍ୱେଚ୍ଛାସେବକ ବାହିନୀରେ ଯୋଗ ଦେବାକୁ ତଥା ରାଇଫଲ ଶିକ୍ଷା କରିବା ସୁବିଧାରୁ ବଞ୍ଚିତ କରାଯାଉଥିଲା । ପରବର୍ତ୍ତୀ ସମୟରେ ଭାରତୀୟ ଓ ଇଂରେଜୀ ପିଲାମାନେ ଏହି ବିଦ୍ୟାଳୟରେ ଯେପରି ଅବସ୍ଥାରେ ରହିଥିଲେ ତାହା ସୁଭାଷଚନ୍ଦ୍ର ତାଙ୍କ ଆତ୍ମ ଜୀବନୀରେ ବର୍ଣ୍ଣନା କରି ଲେଖିଛନ୍ତି ଆମେ ଏକା ଯାଗାରେ ରହି ଅଧ୍ୟୟନ କରୁଥିଲେ ମଧ୍ୟ ଦୁଇଟି ସ୍ୱତନ୍ତ୍ର ପୃଥିବୀରେ ରହିଥିଲା ଭଳି ମନେ ହେଉଥିଲା । ଏହିଭଳି ବିଦ୍ୟାଳୟ ଭାରତୀୟ ଛାତ୍ରମାନଙ୍କ ଅଧ୍ୟୟନ ପାଇଁ ଉପଯୁକ୍ତ ନୁହେଁ ବୋଲି ସେ ମତ ପ୍ରକାଶ କରିଛନ୍ତି । ଇଂରେଜୀ ଓ ଭାରତୀୟଙ୍କ ଭିତରେ ଏହି ଭେଦ ଭାବର ଅସ୍ପଷ୍ଟ ରେଖା ସେତେବେଳେ ତାଙ୍କ ହୃଦୟରେ ଅଙ୍କିତ ହୋଇ ଯାଇଥିଲା ।

## ରେଭେନ୍ସା କଲିଜିଏଟ ସ୍କୁଲର ମେଧାବୀଛାତ୍ର

ସୁଭାଷ ଚନ୍ଦ୍ର ମିଶନାରୀ ପ୍ରାଥମିକ ବିଦ୍ୟାଳୟରେ ସାତବର୍ଷ ପର୍ଯ୍ୟନ୍ତ ଅଧ୍ୟୟନ ଶେଷକରି ଶେଷ ପରୀକ୍ଷାରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୋଇଥିଲେ । ଏହି ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଲା ବେଳକୁ ସେ ଇଂରେଜୀ ଭାଷାରେ ଅଧିକ ଜ୍ଞାନ ହାସଲ କରିଥିଲେ ତଥା ଶୃଙ୍ଖଳା, ନିୟମାନୁବର୍ତ୍ତିତା ଓ ପରିଷ୍କାର ପରିଚ୍ଛନ୍ନତାରେ ଅଭ୍ୟସ୍ତ ହୋଇଥିଲେ । ତେଣୁ ଏହି ବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ତାଙ୍କର କୌଣସି ଦୁଃଖ ନଥିଲା କି ସେହି ବିଦ୍ୟାଳୟ ଛାଡି ଆସିବାରେ ସେ ଦୁଃଖିତ ହୋଇ ନଥିଲେ । ସୁଭାଷ ୧୯୦୯ ମସିହାରେ କଟକ ରେଭେନ୍ସା କଲିଜିଏଟ୍ ସ୍କୁଲରେ ଆସି ନାମ ଲେଖାଇ ଥିଲେ । ଏହି ବିଦ୍ୟାଳୟରେ ସେ ଗୋଟିଏ ଭିନ୍ନ ପରିବେଶ ଭିତରୁ ଆଉ ଗୋଟିଏ ଅନୁକୂଳ ପରିବେଶ ଭିତରକୁ ଆସିଥିବାରୁ ଆନନ୍ଦ ଅନୁଭବ କଲେ । ପରୋକ୍ଷ ଭାବରେ ସେତେବେଳର ସାମାଜିକ ଓ ରାଜନୈତିକ ଆଲୋଡନ ମଧ୍ୟ ତାଙ୍କୁ ପ୍ରଭାବିତ କରିଥିଲା । କଲିଜିଏଟ୍ ବିଦ୍ୟାଳୟରେ ବଙ୍ଗାଳି ଓ ଓଡିଆ ଶିକ୍ଷକମାନେ ମିଳିମିଶି କାର୍ଯ୍ୟ କରୁଥିଲେ । ତାଙ୍କ ବୃହତ ପରିବାର ଭିତରେ ତାଙ୍କ ପିତାଙ୍କ କର୍ମଚାରୀ ଓ ଭୃତ୍ୟଙ୍କ ଭିତରେ ଓଡିଆ, ବଙ୍ଗାଳି ଓ ମୁସଲମାନ ମିଶିକରି ରହି କାମ କରୁଥିଲେ । ସେମାନଙ୍କ ପ୍ରତି ତାଙ୍କ ପିତାମାତାଙ୍କର ଯେପରି ଶ୍ରଦ୍ଧା ଥିଲା, ସେମାନଙ୍କର ତାଙ୍କ ପ୍ରତି ସମ୍ମାନ ରହିଥିଲା । ମୁସଲମାନ ପିଲାଙ୍କ ସଙ୍ଗେ ସୁଭାଷ ପିଲାଦିନୁ ଖେଳୁଥିଲେ ଓ ସ୍କୁଲକୁ ସାଙ୍ଗ ହୋଇ ଯାଉଥିଲେ । ଏହି ପରିବେଶ ପିଲାଦିନୁ ସୁଭାଷଙ୍କୁ ଜାତିଗତ ସଂକୀର୍ଣ୍ଣତା ଓ ସାମ୍ପ୍ରଦାୟକତାର ଉର୍ଦ୍ଧ୍ୱକୁ ଉଠାଇ ନେଇଥିଲା । ଏହା ତାଙ୍କ ଜୀବନର ପାଥେୟ ହୋଇଥିଲା।

ରେଭେନ୍ସା କଲିଜିଏଟ୍ ସ୍କୁଲରେ ସୁଭାଷ ବିଭିନ୍ନ ପାଠ୍ୟ ବିଷୟରେ ବିଶେଷ ଭାବରେ ଇଂରେଜୀରେ ସର୍ବୋଚ୍ଚ ନମ୍ବର ରଖି ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଉଥିଲେ, ସେଥିପାଇଁ ଅନ୍ୟ ଛାତ୍ରମାନେ ତଥା ଶିକ୍ଷକମାନେ ତାଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ଓଡ଼ିଶାର ଅନ୍ୟତମ ଜନନାୟକ ଶ୍ରୀ ବିଜୁପଟ୍ଟନାୟକ ତାଙ୍କର ଗୋଟିଏ ଶ୍ରେଣୀତଳେ ଅଧ୍ୟୟନ କରୁଥିଲେ । ସେତେବେଳର କଲିଜିଏଟ୍ ସ୍କୁଲର ଶିକ୍ଷକମାନଙ୍କ ଭିତରେ ପ୍ରଧାନ ଶିକ୍ଷକ ବେଣୀମାଧବ ଦାସଙ୍କ ପ୍ରତି ତାଙ୍କର ଗଭୀର ସମ୍ମାନ ଓ ଭକ୍ତି ଥିଲା । ବେଣୀମାଧବ ଦାସ ଜଣେ ଅସାଧାରଣ ଶିକ୍ଷକ ଥିଲେ । ସେ ଥିଲେ ଜଣେ ସ୍ୱଦେଶପ୍ରେମୀ ପ୍ରକୃତିପ୍ରିୟ ଓ ଚରିତ୍ରବାନ୍ ଶିକ୍ଷକ, ସେତିକି ବେଳୁ ସେ ମନସ୍ଥିର କରି ନେଇଥିଲେ ଯେ ଜୀବନରେ ଯଦି ସେ କୌଣସି ଆଦର୍ଶ ଗ୍ରହଣ କରନ୍ତି ତାହେଲେ ସେ ସେହି ପ୍ରଧାନ ଶିକ୍ଷକଙ୍କୁ ହିଁ ଅନୁସରଣ କରିବେ । ଏହି ସମୟରେ ସୁଭାଷଙ୍କର ମାନସିକ ଓ ମନସ୍ତାତ୍ତ୍ୱିକ ପରିବର୍ତ୍ତନ ଘଟିଥିଲା । ତାଙ୍କ ଚିନ୍ତାଧାରା ଅନ୍ତର୍ମୁଖୀ ହୋଇଥିଲା । ସେ ତାଙ୍କର ଆଦର୍ଶ ପ୍ରଧାନ ଶିକ୍ଷକ ବେଣୀମାଧବ ଦାସଙ୍କ ଉପଦେଶ ମତେ ନଦୀକୂଳରେ, ପାହାଡ ଉପରେ ତଥା ଖୋଲା ପଡିଆରେ ବସି ମୁକ୍ତ ଭାବରେ ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ । ପ୍ରଧାନ ଶିକ୍ଷକ ଛାତ୍ରମାନଙ୍କୁ ଉପଦେଶ ଦେଇଥିଲେ ଯେ ତୁମେ ପ୍ରକୃତି ନିକଟରେ ନିଜକୁ ସମର୍ପଣ କରିଦିଅ, ପ୍ରକୃତି ତୁମକୁ ତା ଭିତରର ପରିଚୟ ଦେବ । ବାସ୍ତବ ଜୀବନରେ ଏହି ଉପଦେଶକୁ ସେ କାର୍ଯ୍ୟକାରୀ କରିବାପାଇଁ ଉଦ୍ୟମ

କରିଥିଲେ । ପ୍ରକୃତି ଓ ମନୁଷ୍ୟ ଭିତରେ ଅବିଚ୍ଛେଦ୍ୟ ସଂପର୍କ ରହିଛି ବୋଲି ସେ ତାଙ୍କୁ ଯେଉଁ ଶିକ୍ଷା ଦେଇଥିଲେ ତଥା ନୈତିକ ମୂଲ୍ୟବୋଧର ଗୁରୁତ୍ୱ ବୁଝାଇଥିଲେ, ତାକୁ ଅଭ୍ୟାସ କରିବା ଫଳରେ ମନକୁ ସଂଯତ ଓ ଶୃଙ୍ଖଳିତ କରିବାରେ ତାହା ସହାୟକ ହୋଇଥିଲା ।

ତାଙ୍କୁ ଯେତେବେଳେ ପନ୍ଦର ବର୍ଷ ବୟସ ଓ ସେ ଜଣେ ହାଇସ୍କୁଲର ଛାତ୍ର ସେତେବେଳେ ସୁଭାଷଚନ୍ଦ୍ର ତାଙ୍କ ମାନସିକ ଓ ମନସ୍ତାତ୍ତ୍ୱିକ ଜୀବନ ଘୋର ଝଡଝଞ୍ଜା ଭିତରେ ଗତି କରିଥିଲା । ସେ ମାନସିକ ସଂଘର୍ଷର ସମ୍ମୁଖୀନ ହୋଇଥିଲେ । ଏକ ପକ୍ଷରେ ସାଂସାରିକ ସୁଖଭୋଗ ପ୍ରତି ସ୍ୱାଭାବିକ ଆକର୍ଷଣ ଏବଂ ଅନ୍ୟପକ୍ଷରେ ଆଧ୍ୟାତ୍ମିକ ଜୀବନର ବିକାଶ ଭିତରେ ଏହି ସଂଘର୍ଷ ଘଟିଥିଲା ଏବଂ ସାଂସାରିକ ସୁଖଭୋଗର ଆକର୍ଷଣ ଉପରେ ଆଧ୍ୟାତ୍ମିକ ବିକାଶର ଭାବନା ଆଧିପତ୍ୟ ବିସ୍ତାର ଲାଭ କରିଥିଲା । ଏତେ କମ ବୟସରେ ଏଭଳି ସଂଘର୍ଷ ଅସ୍ୱାଭାବିକ ହେଲେ ମଧ୍ୟ ସୁଭାଷଙ୍କ ଜୀବନରେ ତାହାହିଁ ଘଟିଥିଲା । ପ୍ରକୃତି ଉପାସନା ଏ ଦିଗରେ ତାଙ୍କର ସହାୟକ ହୋଇଥିଲା ମାତ୍ର ଏହି ସଂଘର୍ଷର ସମାଧାନ ପାଇଁ ଏହା ଯଥେଷ୍ଟ ନଥିଲା । ଏହି ସମୟରେ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ସୁଭାଷଚନ୍ଦ୍ରଙ୍କୁ ସଠିକ ପଥ ପ୍ରଦର୍ଶନ କରିଥିଲା । ସେ ତାଙ୍କର ଜଣେ ବନ୍ଧୁଙ୍କ ଘରକୁ ଯାଇଥିବା ବେଳେ ସେଠାରେ ସ୍ୱାମୀ ବିବେକାନନ୍ଦଙ୍କ ଗ୍ରନ୍ଥାବଳୀ ଦେଖିଥିଲେ । ସେହି ଗ୍ରନ୍ଥଗୁଡିକୁ ସେ ନେଇ ପଢି ପକାଇଥିଲେ । ତା ଫଳରେ ତାଙ୍କର ମାନସିକ ବିପ୍ଳବ ଘଟିଥିଲା । ସେ ଯାହା ଖୋଜୁଥିଲେ ସେଥିରୁ ତାହା ପାଇଗଲେ । ତାଙ୍କ ଭବିଷ୍ୟତ ଜୀବନର ମୁଖ୍ୟ ଆଦର୍ଶର ସନ୍ଧାନ ସେ ସେଥିରୁ ପାଇଗଲେ । ବିବେକାନନ୍ଦଙ୍କ ଗ୍ରନ୍ଥାବଳୀ ଅଧ୍ୟୟନ କରି ସେ ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଜୀବନର ଲକ୍ଷ୍ୟ ହେଲା - ନିଜ ଜୀବନର ମୁକ୍ତିପାଇଁ ସାଧନା କରିବା ଏବଂ ମାନବ ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିଦେବା ଭଗ୍ନୀ ନିବେଦିତାଙ୍କ ପରି ସେ ବିଶ୍ୱାସ କରିଥିଲେ ମାନବ ସେବାଭିତରେ ନିଜ ଦେଶର ସେବା ଅନ୍ତର୍ଭୁକ୍ତ । ସ୍ୱାମୀ ବିବେକାନନ୍ଦ କହିଥିଲେ ଯେ ନିଜ ମାତୃଭୂମି ପ୍ରତି ତାଙ୍କର ସର୍ବଶ୍ରେଷ୍ଠ ସମ୍ମାନ ରହିଛି । ସ୍ୱାମୀଜୀ କହିଥିଲେ ଯେ ପ୍ରତ୍ୟେକ ଭାରତୀୟ ତାଙ୍କର ଭାଇ ଏବଂ ଭାରତର ମୁକ୍ତି ଲୋକ ଶକ୍ତିର ଉତ୍ଥାନ ଉପରେ ନିର୍ଭର କରେ ଏବଂ ବିଶ୍ୱାସ ଓ ଶକ୍ତି ବଳରେ ହିଁ ମୁକ୍ତି ମିଳିବ । ତାକୁ ସୁଭାଷଚନ୍ଦ୍ର ତାଙ୍କ ଜୀବନର ଭବିଷ୍ୟତ ପାଥେୟ ବୋଲି ଗ୍ରହଣ କରିନେଲେ । ସ୍ୱାମୀ ବିବେକାନନ୍ଦଙ୍କ ଗୁରୁ ରାମକୃଷ୍ଣ ପରମହଂସଙ୍କ ଉପଦେଶ - ''କେବଳ ତ୍ୟାଗ ବଳରେ ହିଁ ମୁକ୍ତି ସମ୍ଭବ'' ନୀତିକୁ ମଧ୍ୟ ସେ ଗ୍ରହଣ କରି ନେଇଥିଲେ ।

ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଉପରେ ବିଶ୍ୱାସ ସ୍ଥାପନ କରିବାପରେ ସୁଭାଷଚନ୍ଦ୍ର ଜୀବନ ଯାପନ ପଦ୍ଧତିରେ ପରିବର୍ତ୍ତନ ଘଟିଥିଲା । ଏହାପରେ ସ୍ୱାମୀ ବିବେକାନନ୍ଦ ଓ ରାମକୃଷ୍ଣଙ୍କ ଶିକ୍ଷାରେ ଅନୁପ୍ରାଣୀତ ଦଳେ ଯୁବକ ତାଙ୍କୁ ତାଙ୍କ ପରିବାର ଭିତରେ ଓ ବାହାରେ ତାଙ୍କୁ ଘେରି ରହିଲେ । ତାଙ୍କ ପରିବାର ଏଥିରେ ବିରକ୍ତି ପ୍ରକାଶ କଲେ କିନ୍ତୁ ତାରକିଛି ଫଳ ହେଲା ନାହିଁ । ପରିବାରର କଟକଣା ନ ମାନି ସେ କାର୍ଯ୍ୟ କଲେ । ତେଣୁ ଅନେକ ସମୟରେ ଘର ତାଙ୍କୁ ଭଲ ଲାଗିଲା ନାହିଁ । ସେ ଘର ବାହାରେ ଏହିଭଳି ବନ୍ଧୁମାନଙ୍କ ସହିତ ଅତିବାହିତ କରିବା ପାଇଁ ସୁଖ ପାଇଲେ । ସମସ୍ତ ପ୍ରକାର ଯୌଗିକ ସାଧନା ଆରମ୍ଭ କଲେ । ଲୁଚି ଲୁଚି ସେ ଏହା କରୁଥିଲେ । ଆଗେ ଅନ୍ୟପିଲାଙ୍କ ସହିତ ମିଶିବାକୁ ତଥା ବାହାରେ ବହୁ ସମୟ ନ କଟାଇବା ପାଇଁ ତାଙ୍କ ପିତା କଡା ଦୃଷ୍ଟି ଦେଉଥିଲେ ସେ ପ୍ରଥମେ ପ୍ରଥମେ ତାହା ମାନୁଥିଲେ ଓ ବାହାରେ ଖେଳିବା ପାଇଁ ଯିବାକୁ ଚାହୁଁନଥିଲେ । ଏଥିପାଇଁ ପରବର୍ତ୍ତୀ ଜୀବନରେ ସେ ଦୁଃଖପ୍ରକାଶ କରିଥିଲେ ।

## ଦୁଃସ୍ଥ ସେବାହିଁ ଭଗବାନଙ୍କ ସେବା ହେଲା ତାଙ୍କ ଆଦର୍ଶ

ଛାତ୍ର ସୁଭାଷ ସ୍ୱାମୀ ବିବେକାନନ୍ଦଙ୍କ ଅମର ବାଣୀ ''ଦୁଃସ୍ଥମାନବ ସେବାହିଁ ଭଗବାନଙ୍କ ସେବା'' ଆଦର୍ଶରେ ଅନୁପ୍ରାଣୀତ ହୋଇ ସେହି ଆଦର୍ଶରେ

ଅନୁପ୍ରାଣୀତ ହୋଇଥିବା ଅନ୍ୟ ଛାତ୍ର ସାଥୀଙ୍କୁ ଘେନି ଏକ ସ୍ୱେଚ୍ଛାସେବକ ବାହିନୀ ଗଠନ କଲେ ଏବଂ ଦୁଃସ୍ଥଙ୍କ ସେବାକାର୍ଯ୍ୟ ଆରମ୍ଭ କଲେ । ସେତେବେଳକୁ ତାଙ୍କ ପିତା ଜାନକୀନାଥ ବୋଷ ଜଣେ ଦକ୍ଷ ଆଇନଜୀବୀ, ସରକାରୀ ଓକିଲ ତଥା କଟକ ମ୍ୟୁନିସିପାଲିଟିର ଚେଆରମେନ୍ ଭାବରେ କଟକ ସହରବାସୀଙ୍କ ନିକଟରେ ସୁପରିଚିତ ଥିଲେ । ସାଧାରଣ ଲୋକେ ତାଙ୍କୁ ଜାନକୀ ସାହେବ ବୋଲି କହୁଥିଲେ । ସୁଭାଷ କଲିଜିଏଟ୍ ସ୍କୁଲରେ ନବମ ଦଶମ ଶ୍ରେଣୀରେ ପଢୁଥିବାବେଳେ ତାଙ୍କ ସ୍ୱେଚ୍ଛାସେବକ ବନ୍ଧୁମାନଙ୍କୁ ନେଇ ରୋଗୀଙ୍କ ସେବା କରିବାକୁ ଖବର ପାଇଲେ ସାଙ୍ଗେ ସାଙ୍ଗେ ଯାଉଥିଲେ । ସେତେବେଳେ ତାଙ୍କୁ ମାତ୍ର ୧୪/୧୫ ବର୍ଷ ବୟସ । ଏହି ସମୟରେ ତାଙ୍କ ଓଡିଆ ବଜାର ବାସଭବନ ଅଞ୍ଚଳରେ ସଂକ୍ରାମକ ବସନ୍ତ ରୋଗ ଆରମ୍ଭ ହୋଇଥିବା ଶୁଣି ଛାତ୍ର ସୁଭାଷ ତାଙ୍କ ସାଥୀମାନଙ୍କୁ ସାଙ୍ଗରେ ନେଇ ଜଣେ ଦରିଦ୍ର ବସ୍ତି ଅଧିବାସୀଙ୍କ ଘରକୁ ଯାଇ ତାଙ୍କ ଘରଦ୍ୱାର ସଫାକରି ରୋଗୀ ଚିକିତ୍ସା ବ୍ୟବସ୍ଥା କରିଥିଲେ । ସେଥିପାଇଁ ସେଦିନ ସେ ଘରକୁ ଫେରୁଫେରୁ ଦିନ ୧୨ଟା ବାଜିଲା । ତାଙ୍କ ଘରେ ମା ନଖାଇ ପୁଅକୁ ଅପେକ୍ଷା କରି ବସିଛନ୍ତି । ସୁଭାଷ ଫେରିଲା ପରେ ମା ବ୍ୟସ୍ତ ହୋଇ ଏତେ ବେଳଯାଏ କୁଆଡେ ଯାଇଥିଲୁ ବୋଲି ପଚାରିଲେ । ସୁଭାଷ ତାଙ୍କ ପାଖରେ ସତକଥା କହିଲେ । ପିତା ଏକଥା ଶୁଣି ସୁଭାଷଙ୍କୁ ତାଗିଦ୍ କଲେ ଯେ ବସନ୍ତ ଗୋଟିଏ ଭୟଙ୍କର ସଂକ୍ରାମକ ରୋଗ ତୁମେ କାହିଁକି ଏପରି ରୋଗୀଙ୍କ ପାଖକୁ ଯାଉଛ । ସୁଭାଷ ଉତ୍ତର ଦେଲେଯେ ରୋଗୀ ଚିକିତ୍ସା କରି ଆସିବାପରେ ପରେ ମୁଁ ଲୁଗା ବଦଳି ପକାଇ ତାକୁ ସାବୁନ ଦେଇ ସଫାକରି ଦେଉଛି । ରୋଗ ଆରମ୍ଭ ବେଳେ ଚିକିତ୍ସା ବ୍ୟବସ୍ଥା ତଥା ପ୍ରତିଷେଧକ ବ୍ୟବସ୍ଥା ନ କଲେ ଏହି ସଂକ୍ରାମକ ରୋଗ ଚାରିଆଡେ ବ୍ୟାପିଯିବ । ପୁଅଙ୍କର ଏକଥା ଯୁକ୍ତି ଯୁକ୍ତ ବୋଲି ପିତା ଜାନକୀନାଥ ଗ୍ରହଣ କଲେ । ସେ ସେତେବେଳେ ମ୍ୟୁନିସିପାଲିଟିର ଚେଆରମେନ୍ ଥିଲେ ତେଣୁ ମ୍ୟୁନିସିପାଲିଟିକୁ ଖବର ଦେଇ ଡାକ୍ତର ଓ ଔଷଧ ନେଇ ସେଠାରେ ପହଞ୍ଚିଥିଲେ ।

## ସେବା ବଳରେ ହୃଦୟ ପରିବର୍ତ୍ତନ

ତାଙ୍କ ବାସଭବନ ଥିବା ଓଡ଼ିଆ ବଜାର ଅଞ୍ଚଳରେ ଦଳେ ଗୁଣ୍ଡାଶ୍ରେଣୀର ଲୋକ ନାନାପ୍ରକାର ଅସାମାଜିକ କାର୍ଯ୍ୟ କରି ବସ୍ତି ବାସିନ୍ଦାଙ୍କ ଭିତରେ ଆତଙ୍କ ସୃଷ୍ଟି କରୁଥିଲେ । ତାଙ୍କ ନେତାଥିଲେ ହାଇଦର । ଗୁଣ୍ଡାମି ଓ ଅସାମାଜିକ କାର୍ଯ୍ୟକରି ସେ ବାରମ୍ବାର ଜେଲ ଯାଇଥିଲେ ମାତ୍ର ସେଥିରେ ତାଙ୍କର କୌଣସି ପରିବର୍ତ୍ତନ ହେଉନଥିଲା ବରଂ ତାଙ୍କର ସ୍ୱଭାବ ବେଳକୁ ବେଳ ଉଗ୍ର ହେଉଥିଲା । ହାଇଦରଙ୍କର ଅସାମାଜିକ କାର୍ଯ୍ୟର କୋର୍ଟରେ ବିଚାର ହେଲାବେଳେ ସେତେବେଳର ସରକାରୀ ଓକିଲ ସୁଭାଷଙ୍କ ପିତା ଜାନକୀବାବୁ ହାଇଦରଙ୍କୁ ଖଲାସ ନ କରିବା ପାଇଁ ଯୁକ୍ତି କରନ୍ତି । ସେଥିପାଇଁ ହାଇଦରଙ୍କର ତାଙ୍କ ଉପରେ ରାଗଥାଏ । ସେ ତାଙ୍କଭଳି ଅସାମାଜିକ ଗୁଣ୍ଡାଶ୍ରେଣୀର ଲୋକଙ୍କୁ ବୁଝାଇ ଦେଇଥାନ୍ତି ଯେ ଓଡ଼ିଆ ବଜାରର ଏହି ବଙ୍ଗାଳି ବାବୁମାନେ ସବୁ ଅନିଷ୍ଟର ମୂଳ ତେଣୁ ତାଙ୍କ ପିଲା ଯେଉଁ କାମ କରୁଛନ୍ତି ତାକୁ କେହି ପ୍ରଶୟ ଦିଅ ନାହିଁ । ବସନ୍ତ ରୋଗକୁ ଏହିମାନେ ଆମ ବସ୍ତିକୁ ଡାକି ଆଣିଛନ୍ତି ।

ଘଟଣାକ୍ରମେ ହାଇଦରଙ୍କ ଘରେ ତାଙ୍କ ସ୍ତ୍ରୀ ଓ ପୁଅ ବସନ୍ତ ରୋଗରେ ଶଯ୍ୟାଶାୟୀ ହେଲେ । ହାଇଦର ବ୍ୟସ୍ତ ହୋଇ ଡାକ୍ତରଙ୍କୁ ଡାକିବାକୁ ଗଲେ । ସେତେବେଳେ ଡାକ୍ତରଙ୍କ ସଂଖ୍ୟାକମ୍ । ସମସ୍ତେ ରୋଗୀ ଚିକିତ୍ସା ପାଇଁ ଚାଲିଯାଇଥାନ୍ତି । ଏଣେ ସୁଭାଷଙ୍କ ସ୍ୱେଚ୍ଛାସେବକ ଦଳ ଖବର ପାଇ ହାଇଦରଙ୍କ ଘରେ ଯାଇ ପହଞ୍ଚିଲେ । ସେମାନେ ପ୍ରଥମେ ତାଙ୍କ ଘରଦ୍ୱାର ପରିଷ୍କାର କରିଦେଲେ ଏବଂ ଗୋଟିଏ ହେଁସ ପାରିଦେଇ ସାଙ୍ଗରେ ଆଣିଥିବା ଔଷଧ ଓ ଅନ୍ୟାନ୍ୟ ଜିନିଷ ଘୋଡେଇ ରଖି ରୋଗୀ ଚିକିତ୍ସାରେ ଲାଗିଲେ । ଏହି ସମୟରେ ହାଇଦର ବୁଲିବୁଲି ହତାଶ ହୋଇ ତାଙ୍କ ଘରେ ପହଞ୍ଚିସେହି ବଙ୍ଗାଳିବାବୁଙ୍କ ପିଲାଙ୍କୁ ଦେଖି କାବା ହୋଇଗଲେ । ପିଲାଙ୍କୁ ହାତଯୋଡି କହିଲେ - ତୁମ୍ଭେମାନେ ଲୋକଙ୍କ ଅନିଷ୍ଟ କରୁଛ ବୋଲି ମୁଁ ପ୍ରଚାର କରୁଛି । ମୋ ଦୋଷ କ୍ଷମାକର । ସୁଭାଷ ସାଙ୍ଗେ ସାଙ୍ଗେ କହିଲେ ତୁମ ପୁଅ

ଆମର ଭାଇ, ଆଉ ତା'ର ବାପ ମା କେମିତି ଆମର ଶତ୍ରୁ ହେବେ । କିଛି ଭୟ କରନା । ଘରଦ୍ୱାର ସବୁବେଳେ ପରିଷ୍କାର ପରିଚ୍ଛନ୍ନ କରି ରଖ । ତୁମ ସ୍ତ୍ରୀ ଓ ପିଲା ଭଲ ହୋଇଯିବେ । ତାଙ୍କ ସ୍ତ୍ରୀ ଓ ପୁଅ ଭଲ ହୋଇଗଲେ ଓ ତାପରେ ହାଇଦରଙ୍କର ହୃଦୟ ପରିବର୍ତ୍ତନ ହେଲା । ସେ ଅସାମାଜିକ କାର୍ଯ୍ୟରୁ ନିବୃତ ହେଲେ ।

ଥରେ କଟକ ସହର ଉପକଣ୍ଠର ଗୋଟିଏ ମୁସଲମାନ ବସ୍ତିରେ ନିଆଁ ଲାଗିଗଲା। ଲୋକେ କିଛି ଉପାୟ ନ ପାଇଏଣେତେଣେ ଦଉଡାଦଉଡି କରୁଛନ୍ତି । ଏହି ଖବର ପାଇ କିଛି ସମୟ ପରେ ଦଳେଛାତ୍ର ସେଠାରେ ଆସି ପହଞ୍ଚିଗଲେ । ତାଙ୍କର ନେତା ସୁଭାଷ । ସେମାନେ ନିଆଁ ଲିଭାଇବାରେ ଲାଗିଗଲେ । ଏହି ସମୟରେ ସେତେବେଳର ରେଭେନ୍ସା କଲେଜର ସୁପରିଚିତ ଅଧ୍ୟାପକ ଗୋପାଳଚନ୍ଦ୍ର ଗାଙ୍ଗୁଲି ସେଠାରେ ପହଞ୍ଚିଗଲେ ଓ ପିଲାଙ୍କର ଏହି ସାହସିକ କାର୍ଯ୍ୟର ପ୍ରଶଂସା କରିଥିଲେ । ତାଙ୍କ ବନ୍ଧୁ ଜାନକୀ ବାବୁଙ୍କ ପୁଅ ସୁଭାଷ ଏହି ଦଳର ନେତା ବୋଲି ଜାଣି ଅଧ୍ୟାପକ ଗାଙ୍ଗୁଲି ଅଧିକ ଆନନ୍ଦିତ ହୋଇଥିଲେ । କିଛିଦିନ ପରେ ପୁରୀରେ ଶ୍ରୀ ଜଗନ୍ନାଥଙ୍କ ରଥଯାତ୍ରା ଅନୁଷ୍ଠିତ ହେଲା । ଜାନକୀ ବାବୁ ସପରିବାର ପ୍ରତିବର୍ଷ ରଥଯାତ୍ରା ଦେଖିଯାଆନ୍ତି । ପୁରୀଠାରେ ସେ ଏକ ବାସଭବନ ନିର୍ମାଣ କରିଥିଲେ । ସେ ବର୍ଷ ତାଙ୍କ ସହିତ ଛାତ୍ର ସୁଭାଷ ତାଙ୍କ ସାଙ୍ଗରେ ଯାଇଥିଲେ । ତାଙ୍କ ସ୍ୱେଚ୍ଛାସେବକ ଦଳର ଅନ୍ୟ କେତେକ ଛାତ୍ର ମଧ୍ୟ ପୁରୀ ଯାଇଥିଲେ । ରଥଯାତ୍ରା ବେଳେ ସେମାନେ ଏକାଠି ହୋଇ ସ୍ୱେଚ୍ଛାସେବକ ଭାବରେ କାମ କଲେ । ସେମାନେ ଲୋକଭିଡ ଭିତରେ ପଶି ହଜି ଯାଉଥିବା ପିଲାଙ୍କୁ ଖୋଜି ଆଣି ତାଙ୍କ ବାପ ମାଙ୍କ ନିକଟରେ ଛାଡିଦିଅନ୍ତି । ଲୋକଙ୍କୁ ନେଇ ପାଣି ପିଇବାକୁ ଦିଅନ୍ତି, କେହି ପଡ଼ିଗଲେ, କ୍ଷତ ବିକ୍ଷତ ହେଲେ ତାଙ୍କର ଚିକିତ୍ସା କରନ୍ତି । ଦୁଃସ୍ଥ ସେବାହିଁ ଭଗବାନଙ୍କ ସେବା ଥିଲା ତାଙ୍କ ପ୍ରେରଣାର ଉତ୍ସ ।

## କଟକରେ ଦୁର୍ଗାପୂଜାର ଆୟୋଜନ

ପୁରୀଠାରୁ କଟକ ଫେରି ଆସିବାର ମାସକ ପରେ ରାୟବାହାଦୁର ଅଧ୍ୟାପକ ଗାଙ୍ଗୁଲି ତାଙ୍କବନ୍ଧୁ ଜାନକୀନାଥ ବୋଷଙ୍କୁ କଟକରେ ଦୁର୍ଗାପୂଜା ଆୟୋଜନ କରିବା ପାଇଁ ପ୍ରସ୍ତାବ ଦେଲେ । ଜାନକୀ ବାବୁ ଏହା ଏକ ଉତ୍ତମ ପ୍ରସ୍ତାବ ବୋଲି ମତ ଦେଲେ ମାତ୍ର ଆଶଙ୍କା କଲେଯେ ମୁସଲମାନମାନେ ଏଥିରେ ବାଧାଦେଇ ପାରନ୍ତି ମାତ୍ର ଅଧ୍ୟାପକ ଗାଙ୍ଗୁଲି ତାଙ୍କୁ ଉତ୍ତର ଦେଲେ ଯେ ସଂକ୍ରାମକ ରୋଗ ବ୍ୟାପୀ ଥିଲା ବେଳେ ସୁଭାଷଙ୍କ ନେତୃତ୍ୱରେ ଛାତ୍ର ସ୍ୱେଚ୍ଛାସେବକମାନେ ମୁସଲମାନ ବସ୍ତିରେ ଯାଇ ରୋଗୀ ସେବା କରିଥିଲେ । ସେମାନଙ୍କର ମନ ପରିବର୍ତ୍ତନ ହୋଇଛି ତେଣୁ ସେମାନେ ଏଥିରେ ବାଧା ସୃଷ୍ଟି କରିବେ ନାହିଁ ବୋଲି ସେ ଭାବୁଛନ୍ତି । ଯାହାହେଉ କଟକ ସହରରେ ଦୁର୍ଗା ପୂଜାର ଆୟୋଜନ କରିବା ପାଇଁ ଉଭୟେ ରାଜିହେଲେ ଏବଂସୁଭାଷଙ୍କୁ ଏଥିପାଇଁ ସହଯୋଗ କରିବାକୁ ପରାମର୍ଶ ଦେଲେ । ସୁଭାଷ ଏଥିରେ ରାଜିହୋଇ ତାଙ୍କୁ କହିଲେ ଯେ ଆମେ ଦୁର୍ଗାପୂଜା ପାଇଁ ସବୁ କାର୍ଯ୍ୟ କରିବୁ । ଆପଣମାନେ କେବଳ ପରାମର୍ଶ ଦେବେ ଏବଂ ତ୍ରୁଟି ହେଲେ ତାହା ଦର୍ଶାଇବେ ମାତ୍ର ଆମ କାମରେ ହସ୍ତକ୍ଷେପ କରିବେ ନାହିଁ ବୋଲି ପ୍ରତିଶ୍ରୁତି ଦେବେ । ଅଧ୍ୟାପକ ଗାଙ୍ଗୁଲି ସେ ପ୍ରତିଶ୍ରୁତି ଦେଲେ । ଦୁର୍ଗାପୂଜା ସମୟ ଆସିଲା । ସୁଭାଷଙ୍କ ନେତୃତ୍ୱରେ ଏଥିପାଇଁ ଯେଉଁ ଚାନ୍ଦା ଆଦାୟ ହେଲା ସେଥିପାଇଁ ପ୍ରଥମେ ଚାନ୍ଦାଦେଲେ ହାଇଦର । ଛାତ୍ର ସେବକମାନେ ଦେଢମାଇଲ ଦୂରରୁ ଚିତ୍ରକର ସାହିରୁ ଦୁର୍ଗାମୂର୍ତ୍ତି ବୋହି ଆଣିବାଠୁ ଆରମ୍ଭ କରି ଦୁର୍ଗାମଣ୍ଡପ ସଜାଇବା ଓ ଯଥେଷ୍ଟ ଫଳଫୁଲ ସଂଗ୍ରହ କାର୍ଯ୍ୟ ନିଷ୍ଠା ଓ ଦକ୍ଷତାର ସହିତ ସମ୍ପନ୍ନ କଲେ । ଶେଷରେ ଦୁର୍ଗାଦେବୀଙ୍କ ପ୍ରତି ପୁଷ୍ପମାଲ୍ୟ ଅର୍ପଣ କଲାବେଳେ ଦଶମ ଶ୍ରେଣୀର ଛାତ୍ର ସୁଭାଷ ଯେପରି ଶୁଦ୍ଧ ଓ ସୁନ୍ଦର ଭାବରେ ସଂସ୍କୃତ ସ୍ତବ ପାଠକଲେ ସେଥିରେ ସମସ୍ତେ ବିସ୍ମିତ ହୋଇଯାଇଥିଲେ। ସେତେବେଳେ ସେ ମନଯୋଗ ସହକାରେ ସଂସ୍କୃତ ଭାଷା ଅଧ୍ୟୟନ କରୁଥିଲେ ।

## କଟକର ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟର ନେତୃତ୍ୱ

ଏହି ସମୟରେ ଛାତ୍ରସାଥୀମାନଙ୍କୁ ନେଇ ସୁଭାଷ ଚନ୍ଦ୍ର ଗୋଟିଏ ସଂକୀର୍ତ୍ତନ ଦଳ ଗଢିଥିଲେ । ସଂକୀର୍ତ୍ତନ ପାଇଁ

ଗୋଟିଏ ମୃଦଙ୍ଗ ଏକାନ୍ତ ଆବଶ୍ୟକ ମାତ୍ର ମୃଦଙ୍ଗ କିଣିବା ପାଇଁ ସେମାନଙ୍କ ପାଖରେ ପଇସା ନାହିଁ ତେଣୁ ସେମାନେ ବସ୍ତିର ଜଣେ ଲୋକଠାରୁ ପୁରୁଣା ମୃଦଙ୍ଗଟି ଧାର ଆଣି ବଜେଇ ଶିଖିଲେ । ଏହିପରି ଦିନେ ମୃଦଙ୍ଗ ଜଣେ ପିଲା ଛିଡାହୋଇ ବଜାଉ ଥିଲାବେଳେ ମୃଦଙ୍ଗଟି ଛିଣ୍ଡି ତଳେ ପଡି ଭାଙ୍ଗିଗଲା । ଏହା ଦେଖି ପିଲାଙ୍କର ମନେହେଲା ଯେମିତି ତାଙ୍କର ଗୋଟିଏ ପିଞ୍ଜରା ହାଡ ଭାଙ୍ଗିଗଲା କାରଣ ଯେଉଁ ଲୋକଠାରୁ ମୃଦଙ୍ଗଟି ମାଗିକରି ଆଣିଥିଲେ ସେ ଲୋକଟି ଅତି କୃପଣ । ବହୁ କଷ୍ଟରେ କିଛିଦିନ ପାଇଁ ପିଲାଙ୍କୁ ମୃଦଙ୍ଗଟି ଦେଇଥିଲା । ସତକୁ ସତ ସେ ଲୋକଟି ଖବର ପାଇ ସାଙ୍ଗେ ସାଙ୍ଗେ ଆସି ପାଟିକରି କହିଲା - ମୃଦଙ୍ଗ ପାଇଁ ପାଞ୍ଚଟଙ୍କା ଦିଅ, ନହେଲେ ମୁଁ ଛାଡିବି ନାହିଁ। ପିଲାମାନେ କଅଣ କରିବେ କିଛି ଭାବି ପାରିଲେ ନାହିଁ ସୁଭାଷ ନିଜ ଉପରେ ଏହାର ଦାୟିତ୍ୱ ନେଇ ତାଙ୍କ ଘରକୁ ଯାଇ କହିଲେ ଯେ ମାସକ ଭିତରେ ମୃଦଙ୍ଗ ବାବଦରେ ପାଞ୍ଚଟଙ୍କା ଆପଣଙ୍କୁ ଦେଇଦେବାର ଦାୟିତ୍ୱ ମୁଁ ନେଉଛି । ତାପରେ ଅନ୍ୟଲୋକେ ତାଙ୍କୁ ଆସି କହିଲେ ଯେ ଜାନକୀ ସାହେବଙ୍କ ପୁଅ ଯେତେବେଳେ ଟଙ୍କା ଦେବାପାଇଁ ଜବାବ ଦେଉଛନ୍ତି ଅପେକ୍ଷା କରି ଯାଅ । ସୁଭାଷ ଏକଥା ଘରେ କହିଲେ ନାହିଁ । ଏହା ଭିତରେ ମାସକ ପାଇଁ ଗୋଟିଏ ଟିଉସନ ଯୋଗାଡ କଲେ ଏବଂ ମାସକପରେ ଟଙ୍କା ପାଇ ତାଙ୍କୁ ଟଙ୍କା ନେଇ ଦେଇଦେଲେ ।

ସେହିପରି ତାଙ୍କ ଘର ପାଖରେ ଗୋଟିଏ ପଡିଆରେ ମଇଳା ଜମା ହୋଇ ରହିଥିଲା ।ସୁଭାଷଙ୍କର ମନହେଲା ଏଠାରୁ ମଇଳାଗୁଡ଼ିକ କାଢି ସଫା କରି ଏଠାରେ ବିଭିନ୍ନ ପ୍ରକାର ଫୁଲଫଳ ଗଛ ଲଗାଇ ଗୋଟିଏ ସୁନ୍ଦର ବଗିଚା କରିବା । ସେତେବେଳେ ଲୋକସଂଖ୍ୟା କମଥିଲା ତେଣୁ ସ୍ଥାନପାଇଁ ଚାହିଦା ନଥିଲା । ସୁଭାଷଙ୍କ ନେତୃତ୍ୱରେ ତାଙ୍କ ଛାତ୍ରବାହିନୀ କୋଡିକୋଦାଳ ଧରି ମାଟି ହାଣିବାରେ ଲାଗିଲେ । ମାଟି ହାଣିବାର ଅଭ୍ୟାସ ନାହିଁ ତେଣୁ ହାଣୁ ହାଣୁ କୋଦାଳଚୋଟ ଗୋଟିଏ ପିଲା ଗୋଡରେ ବସିଗଲା , ରକ୍ତ ଝରଝର ହୋଇ ବୋହିଲା । ପିଲାମାନେ କଅଣ କରିବେ ଜାଣି ପାରିଲେ ନାହିଁ । କିନ୍ତୁ ସୁଭାଷ ନିଜ ଉପରକୁ ଦୋଷ ନେଇ ସେ ପିଲାଟି ତାଙ୍କ ନିଜ ଘରକୁ ନେଲେ ଏବଂ ମାଙ୍କୁ କହି ତା'ଗୋଡରୁ ରକ୍ତ ପୋଛାପୋଛି କରି ଔଷଧଦେଇ ପଟିବାନ୍ଧି ତା ଘରେ ନେଇ ଛାଡି ଆସିଲେ ।

ସୁଭାଷଙ୍କ ଉତ୍ସାହ ଏତିକିରେ ଶେଷ ହୋଇନଥିଲା । ସେ ରହୁଥିବା ବସ୍ତି ଅଞ୍ଚଳରେ ଗୋଟିଏ ପାଠାଗାର ସ୍ଥାପନ କରିବା ପାଇଁ ସ୍ଥିର କଲେ ଓ ଏକଥା ସେ ତାଙ୍କର ସ୍ୱେଚ୍ଛାସେବକ ବାହିନୀର ଅନ୍ୟସାଥୀମାନଙ୍କୁ ଜଣାଇଦେଲେ । ସେତେବେଳକୁ ସେ ରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କ ଗ୍ରନ୍ଥାବଳୀ ଅଧ୍ୟୟନ କରି ଅନୁପ୍ରାଣୀତ ହୋଇଥାନ୍ତି ତେଣୁ ସେ ବନ୍ଧୁମାନଙ୍କୁ କହିଲେ ଯେ ଶ୍ରୀ ରାମକୃଷ୍ଣ ଓ ସ୍ୱାମୀ ବିବେକାନନ୍ଦଙ୍କ ରଚନାବଳୀ ପାଠାଗାରକୁ ଯୋଗାଇ ଦେବେ ଓ ତା ସହିତ ଶବ୍ଦ କଳ୍ପଦ୍ରୁମ ଅଭିଧାନ ଖଣ୍ଡିଏ ଦେବେ । ତାପରେ ସେମାନେ ମାଗିମାଗି ଆଉ କିଛି ବହି ଯୋଗାଡ କଲେ ଓ ପାଠାଗାର ବିଧିବଦ୍ଧ ଭାବରେ ଚାଲିଲା । ତାପରେ ସୁଭାଷ ଅନୁଭବ କଲେ ଯେ ଯେଉଁ ପିଲାମାନେ ପାଠ ପଢିବାର ସୁଯୋଗ ନ ପାଇ ବୁଲୁଛନ୍ତି, ସେମାନଙ୍କ ପାଇଁ ଏହିଭଳି ପାଠାଗାରର କିଛି ମୂଲ୍ୟ ନାହିଁ । ତେଣୁ ସେମାନଙ୍କୁ ପଢେଇବାକୁ ହେବ । କିଛିଦିନ ପରେ ପାଠାଗାର ନିକଟରେ ଗୋଟିଏ ରାତିପଢା ବିଦ୍ୟାଳୟ ଖୋଲିଗଲା । ସାଥୀମାନଙ୍କ ସହିତ ମିଶି ପାଠ ପଢାରୁ ବଞ୍ଚିତ ହୋଇଥିବା ପିଲାମାନଙ୍କୁ ଆଣି ପଢାଇଲେ । ଏହିପରି ବହୁ ଉନ୍ନୟନ ପରିକଳ୍ପନାର ନେତୃତ୍ୱ ନେଇଥିଲେ ବାଳକ ସୁଭାଷ ଚନ୍ଦ୍ର । ସେ ଯେପରି ନେତା ହେବାପାଇଁ ଜନ୍ମ ଗ୍ରହଣ କରିଥିଲେ । ଏହି କାର୍ଯ୍ୟଗୁଡ଼ିକ ତାଙ୍କ ଜୀବନୀ ଲେଖକ ବଙ୍ଗଳାର ଲବ୍ଧ ପ୍ରତିଷ୍ଠ ଶିଶୁ ସାହିତ୍ୟିକ ଓ କଥାକାର ମଣିଲାଲ ବନ୍ଦୋପଧ୍ୟାୟ ତାଙ୍କ ପ୍ରଣୀତ ''ତୋମାଦେର ସୁଭାଷଚନ୍ଦ୍ର'' ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ଲେଖକ 'ଗଳ୍ପଯାଦୁ' ନାମରେ ବଙ୍ଗ ସାହିତ୍ୟରେ ସୁପରିଚିତ, ଲେଖକ ତାଙ୍କ ପୁସ୍ତକର ମୁଖବନ୍ଧରେ ଲେଖିଛନ୍ତି ଯେ ସୁଭାଷ ଅଧ୍ୟୟନ କରିଥିବା

କଟକର ରେଭେନ୍ସା କଲିଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ବେଣୀମାଧବ ଦାସ, ରେଭେନ୍ସା କଲେଜର ପୂର୍ବତନ ଅଧ୍ୟାପକ ରାୟ ବାହାଦୁର ଗୋପାଳଚନ୍ଦ୍ର ଗାଙ୍ଗୁଲି ତଥା ତାଙ୍କ ପିତା ଜାନକୀନାଥ ବୋଷ ଓ ଅନ୍ୟାନ୍ୟ ଆତ୍ମୀୟଙ୍କଠାରୁ ଏହିସବୁ ଚିତ୍ତାକର୍ଷକ ତଥା ଶିକ୍ଷଣୀୟ ଘଟଣାବଳୀ ସଂଗ୍ରହ କରିଥିଲେ ।

## ପ୍ରଧାନ ଶିକ୍ଷକଙ୍କଠାରୁ ଭବିଷ୍ୟତ ଜୀବନର ପାଥେୟ ସଂଗ୍ରହ

ପୂର୍ବରୁ ସୁଭାଷଙ୍କର ପ୍ରଧାନଶିକ୍ଷକଙ୍କ ବେଣୀମାଧବ ଦାସଙ୍କ ସହିତ ଆତ୍ମୀୟତା ସଂପର୍କରେ ଉଲ୍ଲେଖ କରାଯାଇଛି । ତାଙ୍କ ପ୍ରତି ସୁଭାଷଙ୍କର ଗଭୀର ଭକ୍ତି ଓ ସମ୍ମାନ ଥିଲା । ସେ ତାଙ୍କଠାରୁ ଭବିଷ୍ୟତ ଜୀବନର ପ୍ରଥମ ପାଥେୟ ସଂଗ୍ରହ କରିଥିଲେ । ବେଣୀମାଧବ ଦାସ ଥିଲେ ବଙ୍ଗଳାର ବିପ୍ଳବୀମାନଙ୍କର ଅନ୍ୟତମ ନେତ୍ରୀ ବୀଣାଦାସଙ୍କର ପିତା ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନ ବେଳୁ ସେ ଏଥିପ୍ରତି ଆକୃଷ୍ଟ ହୋଇଥିଲେ । ସେ ପ୍ରତ୍ୟକ୍ଷ ଭାବରେ ସ୍ୱଦେଶୀ ଆନ୍ଦୋଳନରେ ଅଂଶଗ୍ରହଣ କରିନଥିଲେ ମଧ୍ୟ ଜଣେ ନିଷ୍ଠାପର ସ୍ୱଦେଶୀ ପ୍ରେମୀ ଥିଲେ । ତେଣୁ ବ୍ରିଟିଶ ସରକାରଙ୍କ ବିଷଦୃଷ୍ଟିରେ ପଡିଥିଲେ । ତାଙ୍କୁ ବିଦ୍ୟାଳୟରୁ ବହିଷ୍କୃତ କରିଦେବାପାଇଁ ପ୍ରଥମେ ଚକ୍ରାନ୍ତ ଚାଲିଥିଲା । ଛାତ୍ରମାନେ ଏହା ଜାଣିପାରି ଏହାର ପ୍ରତିବାଦରେ ସୁଭାଷଙ୍କ ନେତୃତ୍ୱରେ ଛାତ୍ରଧର୍ମଘଟ କରିବାକୁ ପ୍ରସ୍ତୁତ ହେଲେ । ସୁଭାଷଙ୍କ ପିତା ତଥା ଅନ୍ୟ ଆତ୍ମୀୟମାନଙ୍କର ସେତେବେଳର ବଙ୍ଗୀୟ ଶିକ୍ଷା ବିଭାଗ ତଥା ସ୍ୱରାଷ୍ଟ୍ର ବିଭାଗର କର୍ମକର୍ତ୍ତାଙ୍କ ସହିତ ଘନିଷ୍ଠ ସଂପର୍କ ଥିଲା । ସେମାନେ ବ୍ରିଟିଶ ସରକାରଙ୍କର ଏହି ନିଷ୍ପତ୍ତିକୁ ବଦଳାଇବା ପାଇଁ କଥାବାର୍ତ୍ତା କଲେ । ଏହି ନିଷ୍ପତ୍ତି ବଦଳିଲା ମାତ୍ର ତାଙ୍କୁ ଏହି ବିଦ୍ୟାଳୟରୁ ଅନ୍ୟତ୍ର ବଦଳି କରି ଦିଆହେଲା । ସୁଭାଷ ଓ ତାଙ୍କର ଛାତ୍ର ସାଥୀମାନେ ପ୍ରଧାନ ଶିକ୍ଷକଙ୍କୁ ଅତ୍ୟନ୍ତ ଦୁଃଖ ଓ ଅଶ୍ରୁପୂର୍ଣ୍ଣ ନୟନରେ ବିଦାୟ ଦେଇଥିଲେ ।

ପିଲାବେଳେ ସୁଭାଷ ପିତାମାତାଙ୍କ ଆଦେଶ ମାନି ଚଳୁଥିଲେ । ପିତାଙ୍କ ପ୍ରତି ତାଙ୍କର ଅଧିକ ଭୟ ଓ ଭକ୍ତି ଥିଲା । ମାତ୍ର ସ୍ୱାମୀ ବିବେକାନନ୍ଦଙ୍କ ଉପଦେଶରେ ଅନୁପ୍ରାଣୀତ ହେବାପରେ ତାଙ୍କୁ ଘର ଆଉ ଭଲଲାଗୁନଥିଲା । ତାଙ୍କ ସହିତ ଏକମତ ହେଉଥିବା ଛାତ୍ରସାଥୀମାନଙ୍କ ସହିତ ସେ ବାହାରେ ଅଧିକ ସମୟ କଟାଉ ଥିଲେ । କୌଣସି ସନ୍ନ୍ୟାସୀଙ୍କୁ ଦେଖିଲେ ସେ ତାଙ୍କ ସହିତ ସଂପର୍କ ସ୍ଥାପନ କରୁଥିଲେ । ମାତ୍ର କିଛି ଦିନପରେ ଏହିଭଳି କାର୍ଯ୍ୟର ଆବଶ୍ୟକତା ନାହିଁ ବୋଲି ଅନୁଭବ କରି ସେ ସେଥିରୁ ବିରତ ହେଲେ ଏବଂ କେବଳ ସ୍ୱାମୀ ବିବେକାନନ୍ଦଙ୍କ ଉପଦେଶ ଅନୁସରଣ କରି ଚାଲିଲେ ।

ମାଟ୍ରିକ୍ୟୁଲେସନ ପରୀକ୍ଷା ଦେଇ ସାରିବାପରେ ଫଳପ୍ରକାଶ ପାଇବା ପୂର୍ବରୁ ସେ ତାଙ୍କର କେତେକ ଛାତ୍ରସାଥୀଙ୍କ ସହିତ କଟକ ସହର ନିକଟବର୍ତ୍ତୀ କେତେକ ଗାଁ ବୁଲି ଯାଇଥିଲେ । ସେମାନେ ଯେଉଁ ଗାଁକୁ ଯାଉଥିଲେ ଗ୍ରାମବାସୀଙ୍କ ସହିତ ଆଲୋଚନା କରୁଥିଲେ ଓ ଗ୍ରାମ ସଂଗଠନ ସଂବନ୍ଧରେ ଗ୍ରାମବାସୀଙ୍କ ମତାମତ ସଂଗ୍ରହ କରୁଥିଲେ । ଗ୍ରାମବାସୀଙ୍କ ସହିତ ଏହା ଥିଲା ତାଙ୍କର ପ୍ରଥମ ପ୍ରତ୍ୟକ୍ଷ ସଂପର୍କ ।

ଏହିପରି ଅବାଧ୍ୟ ଓ ଖାମଖିଆଲି ଭାବରେ ସୁଭାଷଚନ୍ଦ୍ର କାର୍ଯ୍ୟ କରୁଥିବା ଦେଖି ତାଙ୍କ ପିତାମାତା ଓ ଆତ୍ମୀୟମାନେ ଦୁଃଖିତ ହୋଇଥିଲେ । ସୁଭାଷଙ୍କ ଭଳି ଜଣେ ମେଧାବୀ ଛାତ୍ରଙ୍କଠାରୁ ସେ ଏହା ଆଶା କରୁନଥିଲେ । ତାଙ୍କ ପରୀକ୍ଷାଫଳ ଆଶାଜନକ ହେବନାହିଁ ବୋଲି ସେମାନେ ଆଶଙ୍କା କରୁଥିଲେ । ମାତ୍ର ମାଟ୍ରିକ୍ୟୁଲେସନ ପରୀକ୍ଷାଫଳ ପ୍ରକାଶ ପାଇଲା ପରେ ଜଣାପଡିଲା ଯେ ସୁବାଷ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ସମଗ୍ର ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଛନ୍ତି । ଏଥିରେ ପିତାମାତା ବିସ୍ମିତ ତଥା ଆନନ୍ଦିତ ହେଲେ । ପରିବେଶର ପରିବର୍ତ୍ତନ ଘଟିଲେ ତାଙ୍କ ମନ ପରିବର୍ତ୍ତନ ହୋଇଯିବ ବୋଲି ଆଶା କରି ଉଚ୍ଚ ଶିକ୍ଷା ନିମନ୍ତେ ତାଙ୍କୁ କଲିକତା ଘେନି ଆସିଥିଲେ ।

## ପ୍ରେସିଡେନ୍‌ସି କଲେଜ ଛାତ୍ର ସୁଭାଷ

୧୯୧୩ ମସିହାରେ ସୁଭାଷଚନ୍ଦ୍ର କଟକ ରେଭେନ୍ସା କଲିଜିଏଟ ସ୍କୁଲରୁ ମାଟ୍ରିକ୍ୟୁଲେସନ ପାଶକରି ଯାଇ କଲିକତାର ପ୍ରେସିଡେନ୍‌ସି କଲେଜରେ ନାମ ଲେଖାଇଲେ । ସେତେବେଳେ ପ୍ରେସିଡେନ୍‌ସି କଲେଜ ସମଗ୍ର ଦେଶରେ ଉଚ୍ଚଶିକ୍ଷା ପାଇଁ ଏକ ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ ଭାବରେ ସୁପରିଚିତ । ଇଂଲଣ୍ଡରୁ ବିଦ୍ୱାନମାନେ ଆସି ଏଠାରେ ଅଧ୍ୟାପନା କରୁଥିଲେ । ଦେଶର ବିଭିନ୍ନ ଅଞ୍ଚଳରୁ ମେଧାବୀ ଛାତ୍ରମାନେ ଏଠାରେ ଆସି ଅଧ୍ୟୟନ କରୁଥିଲେ । କଟକ ଭଳି ଗୋଟିଏ ଛୋଟିଆ ସହରରୁ ଆସି ବିରାଟ କଲିକତା ସହରରେ ସୁଭାଷ କିପରି ଚଳିବେ ସେଥିପାଇଁ ପିତାମାତା ପ୍ରଥମେ ଚିନ୍ତିତ ଥିଲେ । କଲିକତାରେ ଆସି ପହଞ୍ଚିବାପରେ ରାମକୃଷ୍ଣ ବିବେକାନନ୍ଦ ଆଦର୍ଶର ସମର୍ଥକ ଏକ ଆଦର୍ଶବାଦୀ ଯୁବଗୋଷ୍ଠୀ ତାଙ୍କ ସହିତ ସଂପର୍କ ସ୍ଥାପନ କରିଥିଲେ । ତାଛଡା ଗୋପନରେ ଲୁଚିଛପି କାର୍ଯ୍ୟ କରୁଥିବା ଏକ ବିପ୍ଳବୀ ଯୁବକ ଦଳଙ୍କ ସହିତ ମଧ୍ୟ ତାଙ୍କର ସଂପର୍କ ସ୍ଥାପିତ ହେଲା । କଟକଠାରେ ତାଙ୍କର ଆଧ୍ୟାତ୍ମିକ ସାଧନା ବିଷୟରେ ତାଙ୍କର ଧାରଣା ତଥାପି ଅସ୍ପଷ୍ଟ ଥିଲା । କଲିକତାକୁ ଆସି ଜାଣିଲେ ଯେ ସାମାଜିକ ସେବା ଯେପରି ଏକ ଅପରିହାର୍ଯ୍ୟ ଅଂଗ ଏବଂ ଜାତୀୟ ପୁନର୍ଗଠନ ଏହାର ଅନ୍ତର୍ଭୁକ୍ତ । ସେହି ସମୟରେ ଶ୍ରୀଅରବିନ୍ଦଙ୍କ ଚିନ୍ତାଧାରା ପ୍ରତି ସେ ଅଧିକ ଆକୃଷ୍ଟ ହୋଇଥିଲେ । ଜାତୀୟ କଂଗ୍ରେସର ଅଧିକାଂଶ ନେତା ଭାରତକୁ ଔପନିବେଶୀୟ ସ୍ୱାୟତ୍ତ ଶାସନ ମିଳିଲେ ସନ୍ତୁଷ୍ଟ ହେବେ ବୋଲି ମତ ପ୍ରକାଶ କରୁଥିଲା ବେଳେ ଶ୍ରୀ ଅରବିନ୍ଦ ଭାରତର ପୂର୍ଣ୍ଣ ସ୍ୱାଧୀନତା ଦାବୀ କରୁଥିଲେ ସେ କଂଗ୍ରେସର ବାମପନ୍ଥୀ ମତବାଦୀ ଥିଲେ । ଶ୍ରୀ ଅରବିନ୍ଦଙ୍କ ରହସ୍ୟବାଦ ପ୍ରତି ସେ ଆଗ୍ରହ ପ୍ରକାଶ କରିନଥିଲେ । ଶ୍ରୀ ଅରବିନ୍ଦଙ୍କ ଯୋଗ ସମନ୍ୱୟ ତତ୍ତ୍ୱହିଁ ତାଙ୍କୁ ଅଧିକ ଆକୃଷ୍ଟ କରିଥିଲା । ସେ ପର୍ଯ୍ୟନ୍ତ ଯୁବକ ସୁଭାଷ ପ୍ରତ୍ୟକ୍ଷ ରାଜନୀତି ପ୍ରତି ଆକୃଷ୍ଟ ହୋଇ ନଥିଲେ ।

ସେତେବେଳେ ପ୍ରେସିଡେନ୍‌ସି କଲେଜରେ ଯାହା ପଢାହେଉଥିଲା ସେଥିରେ ସୁଭାଷ ଚନ୍ଦ୍ରଙ୍କର ମନଲାଗୁ ନଥିଲା ତେଣୁ ପ୍ରଥମେ ପ୍ରଥମେ ସେ ପଢାପଢିରେ ଅବହେଳା କରିଥିଲେ ଏବଂ ଅନ୍ୟ କାର୍ଯ୍ୟରେ ମନ ଦେଉଥିଲେ । କଲେଜରେ ବକ୍ତୃତା ପ୍ରତିଯୋଗିତା ବ୍ୟବସ୍ଥା କରାଉଥିଲେ । ଏହାଛଡ଼ା ସେତେବେଳେ ବଙ୍ଗଳାର ବନ୍ୟା ପ୍ରପୀଡିତ ଲୋକଙ୍କ ପାଇଁ ଚାନ୍ଦା ଆଦାୟ କରିବା କାର୍ଯ୍ୟରେ ସେ ଅଧିକ ସମୟ ଦେଉଥିଲେ । ବିଭିନ୍ନ ସ୍ଥାନକୁ ଭ୍ରମଣ କରି ଯିବାପାଇଁ ସେ ଆଗ ବାହାରି ପଡୁଥିଲେ । ସେତେବେଳର ସାମାଜିକ ବ୍ୟବସ୍ଥା ସଂପର୍କରେ ଅଧ୍ୟୟନ କରିବା ଫଳରେ ଏକ ପକ୍ଷରେ କେତେକଙ୍କ ହାତରେ ଧନସଂପଦ ଠୁଳ ହୋଇଥିବା ଓ ଅନ୍ୟ ପକ୍ଷରେ ଚରମ ଦାରିଦ୍ର୍ୟ ଭିତରେ ଲୋକେ କାଳାତିପାତ କରୁଥିବା ସେ ଉପଲବ୍ଧି କରିଥିଲେ ତେଣୁ ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାର ମୌଳିକ ପରିବର୍ତ୍ତନ ଆବଶ୍ୟକ ବୋଲି ସେତିକିବେଳୁ ସେ ଚିନ୍ତା କରିଥିଲେ । ଏହି ସମୟରେ ଛୁଟିରେ ସେ ଆସି କଟକରେ ରହିଥିବା ବେଳେ କଟକର ନିକଟବର୍ତ୍ତୀ କେତେକ ଗ୍ରାମରେ ହଇଜା ବ୍ୟାପୀ ଥିବାର ଶୁଣି ତାଙ୍କର କେତେକ ସ୍ୱେଚ୍ଛାସେବକ ବନ୍ଧୁଙ୍କୁ ନେଇ କୌଣସି କଟକଣା ନ ମାନି ରୋଗୀ ସେବାରେ ଲାଗିଥିଲେ । ଏଥିରେ ତାଙ୍କର ଯେଉଁ ଅନୁଭୂତି ହେଲା ତାହା ସେ ତାଙ୍କ ଆତ୍ମ ଜୀବନୀରେ ଏହିପରି ଉଲ୍ଲେଖ କରିଛନ୍ତି । ଏକ ସପ୍ତାହକାଳର ଅଭିଜ୍ଞତା ବାସ୍ତବ ଭାରତର ଅବସ୍ଥା ପ୍ରତି ମୋର ଆଖିଖୋଲି ଦେଇଥିଲା । ଭାରତର ଗ୍ରାମାଞ୍ଚଳରେ ଦାରିଦ୍ର୍ୟ କିପରି ରାଜତ୍ୱ କରୁଛି, ଲୋକମାନେ ପୋକମାଛି ପରି ମରୁଛନ୍ତି ଏବଂ ନୀରକ୍ଷରତା ଚାରିଆଡେ ଘେରି ରହିଥିଲା ।

## ଗୁରୁ ଅନ୍ୱେଷଣରେ ସୁଭାଷ

ସୁଭାଷ କଲେଜରେ ଅଧ୍ୟୟନ ଆରମ୍ଭ କଲାବେଳେ କଟକ ପରି ସାଧୁ, ସନ୍ୟାସୀ ଅନ୍ୱେଷଣରେ ମଧ୍ୟ

ଲାଗିଥିଲେ । ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତା କରୁଥିବା କେତେକ ସାଧୁଙ୍କ ପ୍ରତି ସେ ଆକୃଷ୍ଟ ହୋଇଥିଲେ ମାତ୍ର ଜଣେ ଉପଯୁକ୍ତ "ଗୁରୁ" ଅନ୍ୱେଷଣରେ ସେ ଘରେ କାହାକୁ କିଛି ନ କହି ଉତ୍ତର ଭାରତର କେତେକ ଧର୍ମପୀଠ ଭ୍ରମଣ କରିଥିଲେ କେତେକ ସ୍ଥାନରେ ଆଶ୍ରମରେ ସାଧୁମାନଙ୍କୁ ସାକ୍ଷାତ କରିଥିଲେ କିନ୍ତୁ ଅଧିକାଂଶ କ୍ଷେତ୍ରରେ ସାଧୁମାନେ ନାନା ଅନ୍ଧବିଶ୍ୱାସରେ ବୁଡି ରହିଥିବା ଓ ଜାତିଭେଦ ତଥା ସଂକୀର୍ଣ୍ଣତାରେ ବିଶ୍ୱାସ କରୁଥିବା ଦେଖି ସେ ହତାଶ ହୋଇଥିଲେ । ହିନ୍ଦୁଧର୍ମର ମୌଳିକ ଆଦର୍ଶ ସେମାନେ ଅନୁସରଣ କରୁନାହାନ୍ତି ବୋଲି ତାଙ୍କର ହୃଦବୋଧ ହେଲା, ଇତି ମଧ୍ୟରେ ସୁଭାଷଙ୍କର କୌଣସି ଖୋଜ ଖବର ନ ପାଇ ସମଗ୍ର ପରିବାର ବ୍ୟସ୍ତ ହୋଇ ରହିଥିଲେ । ଶେଷରେ ଯେଉଁ ବନ୍ଧୁଙ୍କ ସଙ୍ଗେ ସେ ଯାଇଥିଲେ ତାଙ୍କରି ସାଙ୍ଗରେ ଫେରିଆସି ଘରେ ଟାଇଫଏଡ୍ ରୋଗାକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେଲେ । ଏହି ସମୟରେ ହିଁ ପ୍ରଥମ ବିଶ୍ୱ ମହାଯୁଦ୍ଧ ଆରମ୍ଭ ହେଲା ।

ସେତେବେଳେ ବଙ୍ଗ ପ୍ରଦେଶର ବିପ୍ଳବୀମାନେ ଛାତ୍ର ଓ ଯୁବକମାନଙ୍କ ଭିତରେ ଯେଉଁ ପ୍ରଚାର ଚଳେଇ ଥିଲେ ସେଥିରେ ସୁଭାଷ ବିଶେଷ ଭାବରେ ପ୍ରଭାବିତ ହୋଇନଥିଲେ । ବ୍ରିଟିଶ ଶାସକଙ୍କ ଶାସନ କଲିକତାରେ ଯେପରି ପ୍ରତ୍ୟକ୍ଷ ଭାବରେ ଅନୁଭୂତ ହେଉଥିଲା କଟକରେ ସେଭଳି ଅନୁଭୂତ ହେଉନଥିଲା । କଲିକତାରେ ବ୍ରିଟିଶ ଶାସକମାନେ ଯେଉଁ ପ୍ରଭୁତ୍ୱ ଓ ହାକିମି ଦେଖାଉଥିଲେ, ଭାରତୀୟମାନଙ୍କୁ ହୀନ ଦୃଷ୍ଟିରେ ଦେଖୁଥିଲେ ତାହା ଟ୍ରେନ୍‌ରେ ଗଲାବେଳେ, ବସରେ ଗଲାବେଳେ ମଧ୍ୟ ଜଣାପଡି ଯାଉଥିଲା ତେଣୁ ଭାରତୀୟମାନଙ୍କ ପକ୍ଷରେ ତାହା ଅସହ୍ୟ ବୋଧ ହେବା ସ୍ୱାଭାବିକ । ଏହାର ପ୍ରତିକାର କେବଳ ଶାରୀରିକ ଶକ୍ତି ବଳରେ ହିଁ ସମ୍ଭବ ହେବ ବୋଲି ମନେ ହେଉଥିଲା । ଗୋରା ଓ ଭାରତୀୟଙ୍କ ଭିତରେ ସଂଘର୍ଷ ଲାଗିଲେ ପ୍ରଚଳିତ ଆଇନ ଭାରତୀୟଙ୍କୁ କୌଣସି ଭାବରେ ସହାୟକ ହେଉନଥିଲା । ଏହିପରି ଅଭିଜ୍ଞତା ସୁଭାଷଙ୍କଠାରେ ରାଜନୈତିକ ଚେତନା ଜାଗ୍ରତ କରିଥିଲା ମାତ୍ର ତାଙ୍କ ରାଜନୈତିକ ଚିନ୍ତାଧାରାକୁ ନିର୍ଦ୍ଦିଷ୍ଟ ରୂପରେଖ ଦେବାକୁ ଏହା ଯଥେଷ୍ଟ ନଥିଲା । ସେଥିପାଇଁ ସମଗ୍ର ବିଶ୍ୱର ଇତିହାସ ଓ ଘଟଣାବଳୀ ଅଧ୍ୟୟନ କଲେ ଯେ ଭାରତରେ ବ୍ରିଟିଶ ଶାସନର କୌଣସି ସତ୍ତା ରହିବା ବାଞ୍ଛନୀୟ ନୁହେଁ । ଭାରତୀୟମାନଙ୍କୁ ବ୍ରିଟିଶ ଶାସନରୁ ସଂପୂର୍ଣ୍ଣ ମୁକ୍ତ ହେବାକୁ ପଡିବ । ରାଜନୈତିକ ସ୍ୱାଧୀନତା ଏକାନ୍ତ ବାଞ୍ଛନୀୟ ମାତ୍ର ସ୍ୱାଧୀନ ଭାରତର ସ୍ୱାଧୀନତାକୁ ରକ୍ଷା କରିବା ପାଇଁ ସାମରିକ ଶକ୍ତି ଆବଶ୍ୟକ ।

ପ୍ରଥମ ଦୁଇବର୍ଷ ଦାର୍ଶନିକ ଓ ରାଜନୈତିକ ଚିନ୍ତାରେ ତାଙ୍କର ଅତିବାହିତ ହେଲା ଏବଂ ଏଥିରେ ତାଙ୍କର ମାନସିକ ପରିବର୍ତ୍ତନ ଘଟିଥିଲା । ଅଧିକାଂଶ ସମୟ ସେ ତାଙ୍କ ଘନିଷ୍ଠବନ୍ଧୁଙ୍କ ସହିତ ଅତିବାହିତ କଲେ, ଅଧ୍ୟୟନ ପ୍ରତି ଅବହେଳା କଲେ ତେଣୁ ଇଣ୍ଟରମିଡିଏଟ୍ ପରୀକ୍ଷାରେ ଉଚ୍ଚସ୍ଥାନ ଅଧିକାର କରି ପାରିଲେ ନାହିଁ । ଡିଗ୍ରୀ ପାଠ୍ୟ ପାଇଁ ସେ ଦର୍ଶନଶାସ୍ତ୍ର ବିଷୟ ନେଲେ ଏବଂ ଅଧ୍ୟୟନରେ ସଂପୂର୍ଣ୍ଣ ମନୋନିବେଶ କରିଥିଲେ । ଦର୍ଶନଶାସ୍ତ୍ର ଅଧ୍ୟୟନ କରିବାଫଳରେ ତାଙ୍କର ବୌଦ୍ଧିକ ଶୃଙ୍ଖଳା ଆସିଲା ଓ ଯୁକ୍ତି ଯୁକ୍ତ ଭାବରେ ପ୍ରତ୍ୟେକ ବିଷୟ ବିଚାର କଲାପରେ ଯାଇ ସେ ଗ୍ରହଣ କଲେ । ତାଙ୍କର ବିଶ୍ୱାସ ହେଲା ଯେ ପ୍ରକୃତ ମୁକ୍ତ ମନ ପ୍ରତ୍ୟକ୍ଷ ସାକ୍ଷ୍ୟପ୍ରମାଣ ଓ ଯୁକ୍ତିତର୍କ ବିନା କୌଣସି ବିଷୟ ସହଜରେ ଗ୍ରହଣ କରିବ ନାହିଁ ।

## ପ୍ରେସିଡେନ୍‌ସି କଲେଜରୁ ବହିଷ୍କୃତ

୧୯୧୬ ମସିହାରେ ସୁଭାଷ ତୃତୀୟ ବାର୍ଷିକ ଶ୍ରେଣୀରେ ଛାତ୍ରଥିଲା ବେଳେ ଦୁଇଟି ଘଟଣା ଯୋଗୁ ସେ କଲେଜରୁ ବହିଷ୍କୃତ ହେଲେ ଏବଂ ସେହି ଘଟଣା ତାଙ୍କ ଜୀବନଧାରାକୁ ପରିବର୍ତ୍ତନ କରିଦେଇଥିଲା । ପ୍ରେସିଡେନ୍‌ସି କଲେଜରେ ଓଟେନ୍ ନାମରେ ଜଣେ ଇଂରେଜୀ ଅଧ୍ୟାପକ ଥିଲେ । ସେ ଥରେ ତାଙ୍କ ଶ୍ରେଣୀରେ ପିଲାଙ୍କୁ ପଢାଉଥିବା ବେଳେ ସେହି କୋଠରୀର ବାହାର ବାରଣ୍ଡାବାଟେ ଅନ୍ୟ କେତେକ

ପିଲା ହୋହା କରି ଯାଉଥିଲେ । ସେ କ୍ଲାସ ଛାଡି ବାହାରକୁ ଚାଲିଆସି ସେହି ପିଲାମାନଙ୍କୁ ଅଭଦ୍ର ଭାଷାରେ ଗାଳିଦେଇ ସେମାନଙ୍କୁ ଠେଲାପେଲା କରିଥିଲେ । ଛାତ୍ରମାନେ ଉତ୍ୟକ୍ତ ହୋଇ କଲେଜରେ ଧର୍ମଘଟ କଲେ ଏବଂ ସେହି ଅଧ୍ୟାପକ କ୍ଷମା ମାଗନ୍ତୁ ବୋଲି ଦାବୀ କଲେ ମାତ୍ର ଅଧ୍ୟାପକ ତାଙ୍କ ମତରେ ଦୃଢ ରହିଲେ ଓ କ୍ଷମା ମାଗିବାପାଇଁ ଅସ୍ୱୀକାର କଲେ । ଯାହାହେଉ ପରେ ପରେ ସେହି ଅଧ୍ୟାପକ ଓ ପିଲାଙ୍କ ଭିତରେ ମିଳାମିଶା ହୋଇଯାଇଥିଲା । ସେତେବେଳେ ପ୍ରେସିଡେନ୍‌ସି ଭଳି କଲେଜରେ ଧର୍ମଘଟ ଏକ ଅଭୂତପୂର୍ବ ଘଟଣା । ଏଥିପାଇଁ ଛାତ୍ରନେତା ସୁଭାଷଙ୍କୁ କଲେଜ ଅଧ୍ୟକ୍ଷ ସତର୍କ କରାଇ ଦେଇଥିଲେ । ଛାତ୍ର ଓ ଅଧ୍ୟାପକଙ୍କ ଭିତରେ ମିଳାମିଶା ପରେ ମଧ୍ୟ ଛାତ୍ରମାନଙ୍କ ଉପରେ ଯେଉଁ ଜୋରିମାନା ଧାର୍ଯ୍ୟ କରାଯାଇଥିଲା ତାହା ଅଧ୍ୟକ୍ଷ ଉଠାଇନେଲେ ନାହିଁ । ତା ପରମାସରେ ସେଇ ଅଧ୍ୟାପକ ପୁଣି ପ୍ରଥମ ଶ୍ରେଣୀର ଛାତ୍ରମାନଙ୍କୁ ଠେଲାପେଲା କଲେ । ନିୟମ ଅନୁସାରେ କାର୍ଯ୍ୟ କଲେ ତାହା ଫଳପ୍ରଦ ହେବନାହିଁ ବୋଲି ଭାବି ଛାତ୍ରମାନେ ଶେଷରେ ସେହି ଅଧ୍ୟାପକଙ୍କୁ ମାଡ ଦେଲେ । ସୁଭାଷ ଘଟଣା ସ୍ଥଳରେ ନଥିଲେ ଟିକିଏ ଦୂରରେ ଛିଡାହୋଇ ଏସବୁ ଦେଖୁଥିଲେ । ଏହି ଘଟଣା ସଂପର୍କରେ ଯେଉଁ ତଦନ୍ତ ହେଲା ସେଥିରେ ସୁଭାଷ ସାକ୍ଷ୍ୟଦେଇ କହିଥିଲେ ଯେ ଅଧ୍ୟାପକ ଯେପରି ବ୍ୟବହାର କଲେ ତଦନୁରୂପ ଫଳ ପାଇଲେ । ଏହାପରେ ସରକାର ସାଙ୍ଗେ ସାଙ୍ଗେ କଲେଜ ବନ୍ଦ କରିଦେଇ ଗୋଟିଏ ତଦନ୍ତ କମିଟି ଗଠନ କଲେ ।

ଇତିମଧ୍ୟରେ ଅଧ୍ୟକ୍ଷ ଓ ସରକାରଙ୍କ ଭିତରେ ମତଭେଦ ହେବାରୁ ସରକାର ଅଧ୍ୟକ୍ଷଙ୍କୁ ବଦଳି କରିଦେଲେ ମାତ୍ର ଅଧକ୍ଷ ତାଙ୍କ ଦାୟିତ୍ୱ ହସ୍ତାନ୍ତର କରିଦେଇ ଚାଲିଯିବା ପୂର୍ବରୁ ଅନ୍ୟଛାତ୍ରମାନଙ୍କ ସହିତ ସୁଭାଷଙ୍କୁ ଡାକି କହିଲେ- ''ବୋଷ୍ ତୁମେ ଏହି ଗଣ୍ଡଗୋଳର ମୂଳ କାରଣ ମୁଁ ତୁମକୁ କଲେଜରୁ ବହିଷ୍କାର କରିଦେଲି ।'' ସୁଭାଷ ତାଙ୍କୁ ଧନ୍ୟବାଦ ବୋଲି କହିଦେଇ ଘରକୁ ଚାଲି ଆସିଲେ । ପରେ କଲେଜର ପରିଚାଳନା ସମିତି ଅଧ୍ୟକ୍ଷଙ୍କ ଆଦେଶକୁ ସମର୍ଥନ କରି ସୁଭାଷଙ୍କୁ ବିଧିବଦ୍ଧ ଭାବରେ ବହିଷ୍କାର ଆଦେଶ ପଠାଇଦେଲେ । ତାଙ୍କୁ ଅନ୍ୟ କଲେଜରେ ଅଧ୍ୟୟନ କରିବାପାଇଁ ମଧ୍ୟ ଅନୁମତି ଦିଆଗଲା ନାହିଁ ।

ଏହି ସମୟରେ କଲିକତାର ରାଜନୈତିକ ଅବସ୍ଥାର ଅବନତି ଘଟିଲା ଏବଂ ବହୁ ସଂଖ୍ୟକ ରାଜନୈତିକ କର୍ମୀ ଓ ଛାତ୍ର ଗିରଫ ହେଲେ । ସେମାନଙ୍କ ଭିତରେ କଲେଜରୁ ବହିଷ୍କୃତ କେତେକ ଛାତ୍ରଥିଲେ । ସୁଭାଷଙ୍କ କାର୍ଯ୍ୟକୁ ତାଙ୍କ ପିତାମାତା ସମର୍ଥନ କରିଥିବାରୁ ସେ ସନ୍ତୋଷଲାଭ କରିଥିଲେ ।ବସ୍ତୁତଃ ଏହି ବହିଷ୍କାର ଆଦେଶ ତାଙ୍କ ଭବିଷ୍ୟତ ଜୀବନ ଗଠନରେ ସହାୟକ ହୋଇଥିଲା ।।

ଏହିପରି ଏକ ଘଟଣାର ସେ ଦୃଢତା ଓ ସାହସର ସହିତ ସମ୍ମୁଖୀନ ହୋଇ ଥିବାରୁ ଏହା ତାଙ୍କ ମନରେ ଆତ୍ମବିଶ୍ୱାସ ଆଣିଦେଇଥିଲା ଏବଂ ଭବିଷ୍ୟତ ନେତୃତ୍ୱ, ଚରିତ୍ର ଓ ତ୍ୟାଗ ଉପରେ ନିର୍ଭର କରିବ ବୋଲି ସେ ପରିକଳ୍ପନା କରିଥିଲେ । ଏହାହିଁ ଥିଲା ତାଙ୍କର ସନ୍ତୋଷ, ଏହିପରି ପ୍ରେସଡେନ୍‌ସି କଲେଜର ଓଟେନ ଦୁର୍ଘଟଣା ଏକ ଭୟଙ୍କର ଝଡପରି ତାଙ୍କ ମନ ଭିତରେ ସବୁ ଓଲଟ ପାଲଟ କରିଦେଇଥିଲା ।

ନିକଟ ଭବିଷ୍ୟତରେ ପଢିବା ପାଇଁ ଆଉ ସୁବିଧା ମିଳିବ ବୋଲି ଆଶା ନାହିଁ ଭାବିନେଇ ସୁଭାଷ ପୂର୍ବପରି ସାମାଜିକ କାର୍ଯ୍ୟରେ ଉତ୍ସାହର ସହିତ ମନୋନିବେଶ କଲେ । ଭବିଷ୍ୟତ ଜୀବନ ପାଇଁ ସ୍ୱେଚ୍ଛାସେବୀ କାର୍ଯ୍ୟ ଜୀବନର ପାଥେୟ ହେବବୋଲି ତାଙ୍କର ବିଶ୍ୱାସ ଥିଲା । ସେ ଯୁବସଂଗଠନ କରିଥାରେ ଯୁବକମାନଙ୍କର ଶାରୀରିକ, ବୌଦ୍ଧିକ ଓ ନୈତିକ ବିକାଶ ନିମନ୍ତେ ଉଦ୍ୟମ ଆରମ୍ଭ କରିଥିଲେ, ଅସ୍ପୃଶ୍ୟତା ବିରୁଦ୍ଧରେ ଅଭିଯାନ ଚଳେଇଲେ । ଏହି ସମୟରେ ଗୋଟିଏ ସାନ୍ତାଳ ପିଲା ଅସୁସ୍ଥ ହୋଇପଡିବାରୁ ସେ ଅସ୍ପୃଶ୍ୟ ବୋଲି କେହି ତାର ସେବା କଲେ ନାହିଁ, ସୁଭାଷ ତାକୁ ଚିକିତ୍ସା କରିବାପାଇଁ ଘରକୁ ଆଣିଥିଲେ । ତାଙ୍କ ମା ସେହି ସାନ୍ତାଳ ପିଲାଟିର

ସେବାରେ ସାହାଯ୍ୟ କରିବାରୁ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ପୂର୍ବପରି କେତେକ ବନ୍ଧୁଙ୍କ ସହିତ ଐତିହାସିକ ଓ ଧର୍ମପୀଠମାନ ଭ୍ରମଣ କରିଥିଲେ ଏବଂ ପୂଜା ଓ ପର୍ବପର୍ବାଣୀବେଳେ ସ୍ୱେଚ୍ଛାସେବକ ଭାବରେ କାର୍ଯ୍ୟ କରିଥିଲେ ।

ଇତିମଧ୍ୟରେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ପାଇଁ ସୁବିଧା ପାଇବେ ବୋଲି ଶୁଣି ସେ କଲିକତା ଗଲେ ଓ ସ୍କଟିସ ଚର୍ଚ୍ଚ କଲେଜର ଅଧ୍ୟକ୍ଷଙ୍କ ସହିତ ସାକ୍ଷାତ କରି ସେହି କଲେଜରେ ଅଧ୍ୟୟନ କରିବାକୁ ଅନୁମତି ଦେବା ପାଇଁ ଅନୁରୋଧ କରିଥିଲେ । କଲେଜର ଅଧ୍ୟକ୍ଷ ଡଃ ଉରକୁହଟ୍ ସେଥିରେ ରାଜି ହୋଇ କହିଲେ ଯେ ପ୍ରେସିଡେନ୍ସି କଲେଜର ଅଧ୍ୟକ୍ଷ ଲେଖିଦେବା ଦରକାର ଯେ ଏଥିରେ ତାଙ୍କର ଆପତ୍ତି ନାହିଁ । ତାହା କରାଗଲା ଏବଂ ସୁଭାଷ ଦର୍ଶନ ଶାସ୍ତ୍ରରେ ଅନର୍ସ ନେଇ ଅଧ୍ୟୟନ କଲେ । ୧୯୧୬ ମସିହାରେ ବଙ୍ଗଳା ଆମ୍ବୁଲାନସ୍ ବାହିନୀରୁ ଅବସର ଗ୍ରହଣ କରି ଫେରିଥିବା ଜଣେ ଅଫିସରଠାରୁ ଯୁଦ୍ଧର କାହାଣୀ ଶୁଣି ତାଙ୍କ ମନ ଭିତରେ ଉନ୍ମାଦନା ଦେଖାଦେଇ ଥିଲା, ସେହି ସମୟରେ ଭାରତରକ୍ଷା ବାହିନୀର ଏକ ବିଶ୍ୱବିଦ୍ୟାଳୟ ଇଉନିଟ୍ ଖୋଲିବା ପାଇଁ ଭାରତ ସରକାର ନିଷ୍ପତ୍ତି କଲେ । ଅନ୍ୟାନ୍ୟ ଛାତ୍ରଙ୍କ ସହିତ ସୁଭାଷ ବିଶ୍ୱବିଦ୍ୟାଳୟ ପ୍ରତିରକ୍ଷା ବାହିନୀରେ ଯୋଗଦେଇ କୃତିତ୍ୱର ସହିତ ସାମରିକ ଶିକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ତୃତୀୟବର୍ଷ ଏହିପରି ସାମରିକ ଶିକ୍ଷାରେ ଅତିବାହିତ ହେଲା । ଚତୁର୍ଥ ବର୍ଷ ସେ ଅଧ୍ୟୟନରେ ମନୋନିବେଶ କଲେ ଏବଂ ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀ ଅନର୍ସ ସହ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

## ଆଇ.ସି.ଏସ.ପରୀକ୍ଷା ପ୍ରସ୍ତୁତି ପାଇଁ ଲଣ୍ଡନ ଯାତ୍ରା

ସୁଭାଷଚନ୍ଦ୍ର 'ପ୍ରୟୋଗାତ୍ମକ ମନସ୍ତତ୍ତ୍ୱ' ବିଷୟ ନେଇ ସ୍କଟିସଚର୍ଚ୍ଚ କଲେଜରେ ଏମ.ଏ ଅଧ୍ୟୟନ କରିବା ପାଇଁ ପ୍ରସ୍ତୁତ ହେଉଥିବା ବେଳେ ତାଙ୍କ ପିତା ଆଇ.ସି.ଏସ. ପରୀକ୍ଷା ଦେବା ନିମନ୍ତେ ଲଣ୍ଡନ ଯାତ୍ରା କରିବା ପାଇଁ ତାଙ୍କୁ ପରାମର୍ଶ ଦେଲେ । ସେ ନିଜେ ଏହି ନିଷ୍ପତ୍ତି କରିଥିଲେ । ଏଥିପାଇଁ ତାଙ୍କ ସାଥୀ ଯୁବଗୋଷ୍ଠୀଙ୍କ ପରାମର୍ଶ ଲୋଡି ନଥିଲେ । ଅତୀତରେ ଯାହାଙ୍କୁ ତାଙ୍କ ଆଦର୍ଶ ବୋଲି ସେ ମନେ କରୁଥିଲେ ସେଥିରୁ ବିଚ୍ୟୁତ ହୋଇ ଏହା କରିଥିଲେ । ସେ ୧୯୧୯ ମସିହା ସେପ୍ଟେମ୍ବର ୧୫ ତାରିଖରେ ଇଂଲଣ୍ଡ ଯାତ୍ରା କରିଥିଲେ । ସେତେବେଳକୁ ସିଭିଲ ସର୍ଭିସ ପରୀକ୍ଷା ଦେବାକୁ ମାତ୍ର ୮ ମାସ ଥିଲା ଏବଂ ତାଙ୍କର ବୟସ ଦୃଷ୍ଟିରୁ ଏହାଥିଲା ତାଙ୍କର ପ୍ରଥମ ଓ ଶେଷ ସୁଯୋଗ । ତେଣୁ ଭାରତୀୟ ଦୂତାବାସଙ୍କ ସାହାଯ୍ୟ ପାଇଁ ଅପେକ୍ଷା ନକରି କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଭର୍ତ୍ତିହୋଇ ଅଧ୍ୟୟନ ଆରମ୍ଭ କରିଦେଲେ । ଏହାଛଡ଼ା ସେ ଇଣ୍ଡିଆନ ସୋସାଇଟି ଓ ଇଉନିଅନ୍ ସୋସାଇଟିରେ ଯୋଗ ଦେଇଥିଲେ । ଭାରତୀୟ ଛାତ୍ରମାନଙ୍କ ତୁଳନାରେ ଇଂଲଣ୍ଡରେ ଛାତ୍ର ସମାଜ ଯେପରି ସ୍ୱାଧୀନତା ଉପଭୋଗ କରୁଥିଲେ ସେଥିରେ ସେ ମୁଗ୍ଧ ହୋଇ ଯାଇଥିଲେ । ଛାତ୍ରମାନେ ସେଠାରେ ଯେପରି ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇଛନ୍ତି ତାହା ତାଙ୍କୁ ବହୁ ପରିମାଣରେ ପ୍ରଭାବିତ କରିଥିଲା । ଅନ୍ୟପକ୍ଷରେ ଭାରତରେ ଛାତ୍ରମାନଙ୍କୁ ସବୁବେଳେ ସନ୍ଦେହ ଚକ୍ଷୁରେ ଶାସନ କର୍ତ୍ତୃପକ୍ଷ ଦେଖୁଛନ୍ତି । ବ୍ରିଟିଶ ଶାସନ ବିରୋଧୀ ବୋଲି ଛାତ୍ରମାନଙ୍କୁ ସନ୍ଦେହ କରି ହୀନ ଚକ୍ଷୁରେଦେଖାଯାଉଛି । ଏହା ତାଙ୍କ ପକ୍ଷରେ ଦୁଃଖଦାୟକ ମନେ ହୋଇଥିଲା । ଏହାଛଡ଼ା ଇଂରେଜୀମାନଙ୍କର ନିୟମାନୁବର୍ତ୍ତିତା ତଥା ଅତୀତ ପ୍ରତି ଶୋଚନା ନକରି ଭବିଷ୍ୟତରେ ଉଜ୍ଜଳ ଆଶା ନେଇ ସେମାନେ ଯେପରି ଉତ୍ସାହର ସହିତ କାର୍ଯ୍ୟ କରୁଛନ୍ତି ତାହା ତାଙ୍କୁ ମୁଗ୍ଧ କରିଥିଲା । ଏ ସଂପର୍କରେ ଏହି ସମୟରେ ତାଙ୍କ ଆତ୍ମୀୟ ଓ ବନ୍ଧୁମାନଙ୍କୁ ସେ ଲେଖିଥିବା ପତ୍ରରୁ ସୂଚନା ମିଳେ । ଇଂରେଜୀମାନେ ବାସ୍ତବ ଦୃଷ୍ଟିକୋଣରୁ ସବୁବେଳେ ଚିନ୍ତା କରିଥାନ୍ତି ଏବଂ ସର୍ବୋପରି ସେମାନେ ସବୁବେଳେ ଓ ସବୁ ଅବସ୍ଥାରେ ନିଜ ଦେଶର ସ୍ୱାର୍ଥକୁ ସର୍ବପ୍ରଥମ ସ୍ଥାନ ଦେଇଥାନ୍ତି । ସେମାନେ ନିଜ ଦେଶର ନିନ୍ଦା କୌଣସି ଅବସ୍ଥାରେ ବରଦାସ୍ତ କରି ପାରନ୍ତି ନାହିଁ ।

ବ୍ରିଟେନର ଛାତ୍ର ଓ ଭାରତୀୟ ଛାତ୍ରଙ୍କ ଭିତରେ ଉତ୍ତମ ସଂପର୍କ ଥିଲା ମାତ୍ର ସେମାନଙ୍କ ଭିତରେ ସ୍ଥାୟୀ ବନ୍ଧୁତା ସ୍ଥାପିତ ହେବାଭଳି ଅବସ୍ଥା ନଥିଲା । ସାଧାରଣ ବ୍ରିଟେନ ଅଧିବାସୀ ନିଜକୁ ଭାରତୀୟଙ୍କ ଠାରୁ ଉତ୍କୃଷ୍ଟ ବୋଲି ମନେ କରୁଥିଲେ । ସେତେବେଳେ ଭାରତରେ ଜାଲିୟାନାଓ୍ୱାଲାବାଗ ନିର୍ମମ ହତ୍ୟାକାଣ୍ଡ ଘଟିଥିଲା । ଏହି ହତ୍ୟାକାଣ୍ଡର ନାୟକ ଜେନେରାଲ ଡ଼ାୟାରଙ୍କୁ ଇଂଲଣ୍ଡ ଅଧିବାସୀ ପ୍ରଶଂସା କରୁଥିବା ଶୁଣି ସୁଭାଷ ଅତ୍ୟନ୍ତ ମର୍ମାହତ ହୋଇଥିଲେ । ତେଣୁ ଇଂରେଜ ଓ ଭାରତୀୟଙ୍କ ଭିତରେ ପ୍ରକୃତ ବନ୍ଧୁତା ସ୍ଥାପିତ ହେବ ବୋଲି ସେ କଳ୍ପନା କରି ପାରୁନଥିଲେ । ରାଜନୈତିକ ଦଳ ଭିତରୁ ସେତେବେଳେ କେବଳ ଶ୍ରମିକ ଦଳ ଭାରତ ପ୍ରତି ସହାନୁଭୂତିଶୀଳ ଥିଲେ ।

ଆଇ.ସି.ଏସ୍. ପରୀକ୍ଷା ତଥା କେମ୍ବ୍ରିଜଟ୍ରିପୋସ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବାରୁ ଅନ୍ୟକଥା ଚିନ୍ତା କରିବା ପାଇଁ ତାଙ୍କର ସମୟ ନଥିଲା । ସେତେବେଳେ ସେଠାରେ ଥିବା ଭାରତୀୟ ଛାତ୍ରମାନେ ଯେପରି ଛୋଟ କଥାରେ ଏବଂ ମଉଜମଜଲିସରେ ମାତିଥିଲେ ତାହା କରିବା ପାଇଁ ସୁଭାଷ ଚନ୍ଦ୍ରଙ୍କର ସମୟ ନଥିଲା । ପଥଭ୍ରଷ୍ଟ ଭାରତୀୟମାନେ ସୁଭାଷଙ୍କୁ ଦେଖିଲାକ୍ଷଣି ଭୟକରୁଥିଲେ ଓ ପ୍ରକୃତିସ୍ଥ ହୋଇଯାଉଥିଲେ । ସେହି ସମୟରେ ଲଣ୍ଡନର "ଭାରତୀୟ ମଜଲିସ" ଅନୁଷ୍ଠାନକୁ ଯେଉଁ ବିଶିଷ୍ଟ ଭାରତୀୟ ବୁଦ୍ଧିଜୀବୀମାନେ ବକ୍ତୃତା ଦେବାକୁ ଯାଉଥିଲେ ସେ ନିୟମିତ ଭାବରେ ତାଙ୍କ ବକ୍ତୃତା ଶୁଣିବାକୁ ଆସୁଥିଲେ । ବିଭିନ୍ନ ବକ୍ତାମାନଙ୍କୁ ନିମନ୍ତ୍ରଣ କରି ଆଣିବା କାର୍ଯ୍ୟରେ ସେ ସକ୍ରିୟ ସାହାଯ୍ୟ କରୁଥିଲେ । ଜାତୀୟ କଂଗ୍ରେସର ପ୍ରସିଦ୍ଧ ନେତ୍ରୀ ଶ୍ରୀମତୀ ସରୋଜିନୀ ନାଇଡୁଙ୍କ ଭାରତୀୟ ମଜଲିସରେ ଉଦ୍‌ବୋଧନରେ ତାଙ୍କର ବାଗ୍ମିତା ଓ ପାଣ୍ଡିତ୍ୟ ତାଙ୍କୁ କିପରି ମୁଗ୍ଧ କରିଥିଲା ଏବଂ ପାଶ୍ଚାତ୍ୟ ଜଗତରେ ନିଜର ସ୍ଥାନ ଦଳରେ ସେ କିପରି ପ୍ରତିଷ୍ଠିତ ହୋଇଥିଲେ ତାହା ସେ ତାଙ୍କର ଜଣେ ବନ୍ଧୁଙ୍କୁ ଗୋଟିଏ ପତ୍ରରେ ବର୍ଣ୍ଣନା କରିଥିଲେ । ଶ୍ରୀମତୀ ନାଇଡୁଙ୍କ ପାଇଁ ଗର୍ବ ଅନୁଭବ କରୁଥିବା ଜଣାଇଥିଲେ ।

ଭାରତଭଳି ବିରାଟ ଦେଶର ପ୍ରଶାସନ କାର୍ଯ୍ୟକୁ ଦକ୍ଷତାର ସହିତ ଚଳାଇବା ଉଦ୍ଦେଶ୍ୟରେ ଆଇ.ସି.ଏସ. ଅଫିସରମାନଙ୍କୁ ଉପଯୁକ୍ତ ବାସ୍ତବ ତାଲିମ ଦେବାପାଇଁ ବହୁ ଆନୁଷଙ୍ଗିକ ବିଷୟରେ ଶିକ୍ଷା ଦିଆଯାଇଥାଏ । ଏହି ବିଷୟଗୁଡ଼ିକ ଭିତରେ ଥିଲା ଇଂରେଜୀ ଇତିହାସ ଓ ଆଧୁନିକ ଇଉରୋପୀୟ ଇତିହାସ । ଆଧୁନିକ ଇଉରୋପୀୟ ଇତିହାସ ଅଧ୍ୟୟନ କରି ସାରିବା ପରେ ସେ ଇଉରୋପୀୟ ଦେଶର ରାଜନୀତି ବିଷୟରେ ବାସ୍ତବଜ୍ଞାନ ହାସଲ କରିବାକୁ ସମର୍ଥ ହୋଇଥିଲେ । ଆଗରୁ ସୁଭାଷ ଚନ୍ଦ୍ରଙ୍କର ଧାରଣା ଥିଲା ଯେ ବିଭିନ୍ନ ଇଉରୋପୀୟ ଦେଶର ଇତିହାସକୁ ବ୍ରିଟିଶ ଦୃଷ୍ଟିକୋଣରୁ ଲିଖିତ ଇତିହାସ ଜରିଆରେ ଅଧ୍ୟୟନ କରି ଆସିଛନ୍ତି, ମାତ୍ର ସେଠାରେ ସେ ମୌଳିକ ଇଉରୋପୀୟ ଇତିହାସ ଅଧ୍ୟୟନ କଲା ପରେ ଇଉରୋପୀୟ ଆଭ୍ୟନ୍ତରୀଣ ରାଜନୈତିକ ବିକାଶ ଧାରା ସଂପର୍କରେ ପ୍ରକୃତ ଜ୍ଞାନ ହାସଲ କରିଥିଲେ । ଭବିଷ୍ୟତ ଜୀବନରେ ଏହା ତାଙ୍କୁ ବହୁ ସାହାଯ୍ୟ କରିଥିଲା ।

୧୯୨୦ ମସିହା ଜୁଲାଇ ମାସରେ ସିଭିଲସର୍ଭିସ ପରୀକ୍ଷା ଆରମ୍ଭ ହୋଇ ମାସେ ପର୍ଯ୍ୟନ୍ତ ଚାଲିଲା । ସେ ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିବେ ନାହିଁ ବୋଲି ଧରିନେଇ କେମ୍ବ୍ରିଜରେ ତାଙ୍କ ଟ୍ରାଇପସ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବା ବେଳେ ତାଙ୍କର ଜଣେ ବନ୍ଧୁ ଏହି ପରୀକ୍ଷାରେ ସେ ଉତ୍ତୀର୍ଣ୍ଣ ହୋଇଛନ୍ତି ବୋଲି ତାଙ୍କୁ ଅଭିନନ୍ଦନ ଜଣାଇ ପଠାଇଥିବା ଏକ ତାରବାର୍ତ୍ତା ପାଇ ସେ ବିସ୍ମିତ ହୋଇଯାଇଥିଲେ । ସେ ଏହି ପରୀକ୍ଷାରେ ଚତୁର୍ଥସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ଯେଉଁ ଚାକିରି ସେତେବେଳେ ବହୁ ଭାରତୀୟ ପ୍ରତିଭାଶାଳୀ ଛାତ୍ରଙ୍କ ପାଇଁ ଅତ୍ୟନ୍ତ ଲୋଭନୀୟ ଥିଲା, ତାହା ଏବେ ତାଙ୍କ ହାତମୁଠାକୁ ଆସିଯାଇଥିଲା ।

## ଆଇ.ସି.ଏସ. ଚାକିରିରୁ ଇସ୍ତଫା

ସୁଭାଷ ଚନ୍ଦ୍ର ୧୯୨୦ ମସିହା ସେପ୍ଟେମ୍ବର ମାସରେ ଆଇ.ସି.ଏସ ପରୀକ୍ଷାରେ ଉଚ୍ଚସ୍ଥାନ ଅଧିକାର କରି

ଉତ୍ତୀର୍ଣ୍ଣ ହୋଇଛନ୍ତି ବୋଲି ଜାଣିବା ପରେ ସେ ଏହି ଲୋଭନୀୟ ଚାକିରିରେ ଯୋଗଦେବେକି ନାହିଁ ତାହା ନିଷ୍ପତ୍ତି କରିବା ପାଇଁ ତାଙ୍କୁ ପ୍ରାୟ ସାତମାସ ସମୟ ଲାଗିଲା । ଏହି ସମୟ ଭିତରେ ତାଙ୍କର ପିତାମାତା ତଥା ବଡଭାଇ ଶରତଚନ୍ଦ୍ର ବୋଷଙ୍କ ଭିତରେ ବହୁପତ୍ର ବିନିମୟ ହୋଇଥିଲା । ସେହିସବୁ ପତ୍ରରେ ସେ ତାଙ୍କ ମତାମତ ମନ ଖୋଲି ଜଣାଇ ସେମାନଙ୍କ ହୃଦବୋଧ କରାଇବା ପାଇଁ ଉଦ୍ୟମ କରିଥିଲେ । ସେତେବେଳେ ତାଙ୍କ ଜୀବନର ସର୍ବାପେକ୍ଷା ସଙ୍କଟ ଜନକ ଅବସ୍ଥା ଉପନୀତ ହୋଇଥିଲା । ସେ ତାଙ୍କ ଜୀବନର ଉଚ୍ଚତମ ଆଦର୍ଶ ଯେଉଁଥିରେ ଦୁଃଖ, ଦାରିଦ୍ର୍ୟ ବରଣ କରିବାକୁ ହେବ ଏବଂ ଅସରନ୍ତି ଦୁଃଖ ଯନ୍ତ୍ରଣାର ସମ୍ମୁଖୀନ ହେବାକୁ ପଡିବ, ତାହା ଅନୁସରଣ କରିବେ କି ଆଇ.ସି.ଏସ ଭଳି ଲୋଭନୀୟ ଆରାମଦାୟକ ଚାକିରି ଗ୍ରହଣ କରିବେ ? ଏହାହିଁ ସୁଭାଷଚନ୍ଦ୍ରଙ୍କ ହୃଦୟକୁ ମନ୍ଥନ କରୁଥିଲା । ତାଙ୍କ ପିତା ଚାହୁଁଥିଲେ ଯେ ଦଶବର୍ଷ ଭିତରେ ସ୍ୱରାଜ ହାସଲର ସମ୍ଭାବନା ଥିବାରୁ ଇସ୍ତଫାଦେବାର ଆବଶ୍ୟକତା ନାହିଁ ମାତ୍ର ସୁଭାଷ ଚନ୍ଦ୍ର ପିତାଙ୍କୁ ଉତ୍ତରରେ ଦର୍ଶାଇ ଥିଲେ ଯେ ଭାରତ ଦଶବର୍ଷ ଭିତରେ ବା ତା ଅପେକ୍ଷା ଅଳ୍ପ କାଳଭିତରେ ସ୍ୱାଧୀନତା ହାସଲ କରିପାରେ କିନ୍ତୁ ଏଥିପାଇଁ ଉଚ୍ଚମୂଲ୍ୟ ଦେବାକୁ ପ୍ରସ୍ତୁତ ହେଲେ ଯାଇ ତାହା ସମ୍ଭବ ହେବ । ତାଙ୍କ ମତରେ ସେହି ମୂଲ୍ୟହେଲା ସେବା, ତ୍ୟାଗ ଓ ଦୁଃଖ ବରଣ ଦେଶର ଏହି ଅବସ୍ଥାରେ ଆମେ ଯଦି ବିଦେଶୀ ଅମଲାତନ୍ତ୍ର ପ୍ରତି ଆନୁଗତ୍ୟ ସ୍ୱୀକାର କରୁ ଏବଂ ଅର୍ଥ ପ୍ରଲୋଭନରୁ ନିଜକୁ ବନ୍ଧା ପକାଇ ଦେଉ, ତାହେଲେ ସ୍ୱରାଜ ଆମଠାରୁ ଘୁଞ୍ଚି ଘୁଞ୍ଚି ଚାଲିଯିବ ।

ସୁଭାଷ ଚନ୍ଦ୍ର ଜାଣିଥିଲେ ଯେ ତାଙ୍କ ପରିବାରର ଆତ୍ମୀୟମାନେ ମୁଁ ଜଣେ ଖାମଖିଆଲି ଆଡମ୍ବାୟା ଲୋକ ବୋଲି ମନେ କରନ୍ତି ଏବଂ ମୁଁ ଯାହା ବୁଝିଥିବି ତାହାହିଁ କରିବି ବୋଲି ସେମାନଙ୍କର ଧାରଣା ମାତ୍ର ସେମାନେ ମୋ ନିଷ୍ପତ୍ତି ବିଷୟରେ କଅଣ ଭାବିବେ ସେଥିପାଇଁ ମୁଁ ବ୍ୟସ୍ତ ନୁହେଁ । ମୋର ବୃଦ୍ଧ ଓ ରୁଗ୍ଣ ପିତାମାତାଙ୍କ ମନରେ ଆଘାତ ଦେବ ସେଥିପାଇଁ ମୁଁ ଅଧିକ ବ୍ୟସ୍ତ । ତାଙ୍କ ଭାଇଙ୍କ ଭିତରୁ ଶରତ ବୋଷ ଅତୀତରେ ତାଙ୍କ ମତକୁ ସମର୍ଥନ କରି ଆସିଥିଲେ, ସେଥିପାଇଁ ସେ ତାଙ୍କୁ ପତ୍ର ଲେଖି ପିତାମାତାଙ୍କୁ ବୁଝେଇ ଦେବାପାଇଁ ନିବେଦନ କରିଥିଲେ । ସେ ପିତାମାତାଙ୍କୁ ବୁଝାଇ ଦିଅନ୍ତୁ ଯେ ଭାରତର ସ୍ୱାଧୀନତା ପାଇଁ ତାଙ୍କ ପୁଅ ଏତିକି ତ୍ୟାଗ କରିବାକୁ ସେମାନେ ଅନୁମତି ଦିଅନ୍ତୁ । ଜାଣିଶୁଣି ଏହି ତ୍ୟାଗ କରିବାକୁ ପଡିବ ପିତାମାତା ବିଦେଶରେ ତାଙ୍କ ଶିକ୍ଷା ପାଇଁ ଯେଉଁ ଅର୍ଥବ୍ୟୟ କରିଛନ୍ତି ତାହା ଭାରତମାତାଙ୍କ ପାଦତଳେ କୌଣସି ପ୍ରତ୍ୟାଶା ନରଖି ଅର୍ପଣ କଲେ ବୋଲି ଭାବି ନିଅନ୍ତୁ । ତାଙ୍କୁ ଶେଷରେ ସୁଭାଷ ଲେଖିଥିଲେ ଯେ ଆମେ ଯେଉଁମାନେ ସ୍ୱାମୀ ବିବେକାନନ୍ଦ ଓ ଶ୍ରୀଅରବିନ୍ଦଙ୍କ ପ୍ରଭାବରେ ଜୀବନ ଗଢି ଆସିଥିଲୁ ଏହି ପରୀକ୍ଷା ବେଳେ ଉପରୋକ୍ତ ଦୁଇଟି ପରସ୍ପର ବିରୋଧୀ ଆଦର୍ଶ ଭିତରେ ଆମେ ଆପୋଷ ମିଳାମିଶା କରିପାରିବୁ ନାହିଁ । ଆଜି ପର୍ଯ୍ୟନ୍ତ ଚଳି ଆସୁଥିବା ଏକ ଆଦର୍ଶ ପରିବାର ଭିତରେ ସେ ତାଙ୍କ ନିଷ୍ପତ୍ତି ଫଳରେ ଏକ ପ୍ରତିକୂଳ ଅବସ୍ଥା ସୃଷ୍ଟି କରିଥିବାରୁ ଦୁଃଖ ପ୍ରକାଶ କରିଥିଲେ । ୧୯୨୧ ମସିହା ଏପ୍ରିଲ ୨୧ ତାରିଖରେ ସୁଭାଷ ଚନ୍ଦ୍ର ତାଙ୍କର ଇସ୍ତଫାପତ୍ର ସେତେବେଳର ଭାରତମନ୍ତ୍ରୀ ମଣ୍ଟାଗୁଙ୍କ ନିକଟକୁ ପଠାଇ ଦେଇଥିଲେ ।

## ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ନିକଟକୁ ତାଙ୍କର ପତ୍ର

ସୁଭାଷଙ୍କ ଆଇ.ସି.ଏସ. ପଦରୁ ଇସ୍ତଫା ଭାରତରେ ତଥା ଭାରତ ବାହାରେ ଇଂଲଣ୍ଡର ଭାରତୀୟଙ୍କ ଭିତରେ ଆଲୋଡନ ସୃଷ୍ଟି କରିଥିଲା । ସେ ନିଜେ ଏହିପରି ଚାଞ୍ଚଲ୍ୟ ବା ଲୋକମୁଖରେ ପ୍ରଶଂସା ଶୁଣିବାର ବିରୋଧୀ ଥିଲେ । ଭାଇ ଶରତ ବୋଷଙ୍କ ନିକଟକୁ ଲେଖିଥିବା ଶେଷ ପତ୍ରରେ ଲେଖିଥିଲେ ଏହି ଦୁର୍ଗମ ପଥ ଯାତ୍ରାରେ ଆମର ପ୍ରିୟ ମାତୃଭୂମିର ମଙ୍ଗଳ ହେଉ ଏତିକି ପ୍ରାର୍ଥନା, ଏହି ସମୟରେ ତାଙ୍କ ମାଙ୍କଠାରୁ ଯେଉଁ ପତ୍ର ପାଇଥିଲେ ସେଥିରୁ ବହୁ ସାନ୍ତ୍ୱନା ଲାଭ କରିଥିଲେ । ମା ଲେଖିଥିଲେ ଯେ ସେ ମହାତ୍ମାଗାନ୍ଧୀଙ୍କ ଆଦର୍ଶକୁ ପସନ୍ଦ କରନ୍ତି ।

ଆଇ.ସି.ଏସ୍ ଚାକିରିରୁ ଇସ୍ତଫା ଦେବା ପାଇଁ ତାଙ୍କ ନିଷ୍ପତ୍ତି ପରେ ପରେ ସୁଭାଷ ଚନ୍ଦ୍ର ବଙ୍ଗଳାର ସେତେବେଳର କଂଗ୍ରେସ ନେତା ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ନିକଟକୁ ଦୁଇଖଣ୍ଡି ଐତିହାସିକ ପତ୍ର ଲେଖିଥିଲେ । ୧୯୨୧ ମସିହା ଫେବୃଆରୀ ଓ ମାର୍ଚ୍ଚମାସରେ ସେ ଏହିପତ୍ର ଲେଖିଥିଲେ । ସେତେବେଳେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସମଗ୍ର ଦେଶରେ ଅସହଯୋଗ ଆନ୍ଦୋଳନ ଚାଲିଥାଏ । ସରକାରୀ ଚାକିରି ଛାଡ଼ିବା ପାଇଁ ଏବଂ ଛାତ୍ରମାନଙ୍କୁ ସ୍କୁଲ କଲେଜ ଛାଡ଼ିବା ପାଇଁ ଆହ୍ୱାନ ଦିଆଯିବା ସଙ୍ଗେ ସଙ୍ଗେ ବିଲାତି ଲୁଗା ବର୍ଜନ, ନିଶା ଜିନିଷ ଦୋକାନ ଆଗରେ ପିକେଟିଂଗ ପ୍ରଭୃତି ଥିଲା ଅସହଯୋଗ ଆନ୍ଦୋଳନରେ ପ୍ରଧାନ ଅଙ୍ଗ । ସ୍ୱାଧୀନତା ସଂଗ୍ରାମର ଏହି ପ୍ରଥମ ପର୍ଯ୍ୟାୟ ସମଗ୍ର ଦେଶରେ ଚାଲିବା ବେଳେ ସୁଭାଷଚନ୍ଦ୍ର ଏହି ସଂଗ୍ରାମରେ ସକ୍ରୀୟ ଅଂଶ ଗ୍ରହଣ କରିବା ପାଇଁ ଇଚ୍ଛା ପ୍ରକାଶ କରି ଦେଶବନ୍ଧୁ ଚିତ୍ତରଞ୍ଜନଙ୍କୁ ପତ୍ର ଦେଇଥିଲେ । ସେତେବେଳେ ସେ ଚାକିରିରୁ ଇସ୍ତଫା ଦେଇସାରି କେମ୍ବ୍ରିଜରେ ମାନସିକ ଓ ନୈତିକ ବିଜ୍ଞାନ ଟ୍ରାଇପସ୍ ପରୀକ୍ଷା ଦେବାକୁ ଲଣ୍ଡନରେ ରହିଥିଲେ ।

ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ନିକଟକୁ ସେ ଯେଉଁ ପତ୍ର ଲେଖିଥିଲେ ସେଥିରେ ସେ ତାଙ୍କ ନିର୍ଦ୍ଦେଶରେ କାର୍ଯ୍ୟ କରିବେ ଏବଂ ତିନୋଟି ବିଷୟ ଭିତରୁ ଯେଉଁଥିରେ ସେ ଚାହିଁବେ ସେଥିରେ ସେ ମନୋନିବେଶ କରିବେ ବୋଲି ଜଣାଇ ଦେଇଥିଲେ । ପ୍ରଥମତଃ ଦେଶବନ୍ଧୁ ଚିତ୍ତରଞ୍ଜନ ପ୍ରତିଷ୍ଠା କରିଥିବା ଜାତୀୟ କଲେଜରେ ଅଧ୍ୟାପନା, ଦ୍ୱିତୀୟରେ ଦେଶବନ୍ଧୁ ପ୍ରକାଶ କରୁଥିବା ସ୍ୱରାଜ ପତ୍ରିକାର ଇଂରେଜୀ ସଂସ୍କରଣରେ ସାମ୍ବାଦିକତା ଏବଂ ତୃତୀୟରେ କଂଗ୍ରେସ ଅନୁଷ୍ଠାନ ବିଷୟରେ ଗବେଷଣା । ଶେଷରେ ସେ ଜଣାଇ ଦେଇଥିଲେ ଯେ କଂଗ୍ରେସ ଅନୁଷ୍ଠାନର ନିଜର ଏକସ୍ଥାୟୀ ଗୃହ ରହିବା ଏବଂ ବିଭିନ୍ନ ଜାତୀୟ ସମସ୍ୟା ସଂପର୍କ ଗବେଷଣା କରିବା ପାଇଁ ଏକ ଯୁବଗୋଷ୍ଠୀ ମନୋନିବେଶ କରିବା ଆବଶ୍ୟକ । ଏହାଛଡ଼ା ବୈଦେଶିକ ମୁଦ୍ରା ବିନିମୟ ଓ ମୁଦ୍ରାନୀତି କଣହେବ, ଗତଜାତ ଗୁଡିକ ପ୍ରତିକଂଗ୍ରେସର ମତିଗତି. କଅଣ ହେବ, ସ୍ତ୍ରୀ ଓ ପୁରୁଷଙ୍କ ସାବାଳକ ଭୋଟ ଅଧିକାର ବିଷୟରେ କଂଗ୍ରେସର ନୀତି କଅଣ ହେବ ତାହା କଂଗ୍ରେସ ସ୍ପଷ୍ଟ ଭାବରେ ଘୋଷଣା କରିବା ଆବଶ୍ୟକ ଏବଂ ଦଳିତ ଜାତିମାନଙ୍କ ଉନ୍ନତି ନିମନ୍ତେ କଂଗ୍ରେସ ସ୍ପଷ୍ଟ ଭାବରେ ତାଙ୍କର ନୀତି ଜଣାଇ ଦେବା ସଙ୍ଗେ ସଙ୍ଗେ ଏ ସଂପର୍କରେ ତଥ୍ୟ ସଂକଳନ ଓ ଲିପିବଦ୍ଧ କରିବା ପାଇଁ କଂଗ୍ରେସ ଅନୁଷ୍ଠାନର ଏକ ସ୍ଥାୟୀ ଗବେଷକ ଓ ସଂକଳକଙ୍କ ନିଯୁକ୍ତ ହେବା ଆବଶ୍ୟକ । ସେ ମଧ୍ୟ ଚାହିଁଥିଲେ ଯେ କଂଗ୍ରେସ ଅନୁଷ୍ଠାନ ଅଧୀନରେ ଏକ ଗୁପ୍ତଚର ଅନୁଷ୍ଠାନ କାର୍ଯ୍ୟ କରିବା ଆବଶ୍ୟକ ।

## ସ୍ୱାଧୀନତା ସଂଗ୍ରାମୀ ସୁଭାଷ

କେମ୍ବ୍ରିଜରେ ଅଧ୍ୟୟନ ଶେଷ କରିବା ପରେ ସୁଭାଷ ଚନ୍ଦ୍ର ୧୯୨୧ ମସିହା ଜୁନ ମାସରେ ଭାରତକୁ ଫେରିଆସିଲେ । ସେ ଜୁଲାଇ ୧୬ତାରିଖରେ ବମ୍ବେରେ ପହଞ୍ଚିବା ପରେ ତାଙ୍କର ପ୍ରଥମ କାର୍ଯ୍ୟ ହେଲା ମହାତ୍ମାଗାନ୍ଧୀଙ୍କ ସହିତ ସାକ୍ଷାତ କରିବା । ତା ପୂର୍ବରୁ ସେ ଅନ୍ୟ ଦେଶର ସ୍ୱାଧୀନତା ସଂଗ୍ରାମର ଇତିହାସ ଅଧ୍ୟୟନ କରି ସାରିଥିଲେ । ଭାରତରେ ସ୍ୱାଧୀନତା ସଂଗ୍ରାମର ସର୍ବୋଚ୍ଚ ଜନନାୟକଙ୍କ ଚିନ୍ତାଧାରା ସହିତ ପ୍ରଥମେ ପରିଚିତ ହେବାକୁ ଚାହିଁଥିଲେ । ସେ ଗାନ୍ଧିଜୀଙ୍କ ସହିତ ଆଲୋଚନା ବେଳେ ଜାତୀୟ ସଂଗ୍ରାମର ବିଭିନ୍ନ ସ୍ତରର ପରିକଳ୍ପନା ଯାହାକି ଶେଷରେ ଶାସନ କ୍ଷମତା ହାସଲ କରିବା ପାଇଁ ସମର୍ଥ ହେବ, ତାହା ଜାଣିବାକୁ ଚାହିଁଥିଲେ । ଟିକସବନ୍ଦ ଆନ୍ଦୋଳନ, ଅସହଯୋଗ, ବିଦେଶୀ ବସ୍ତ୍ର ବର୍ଜନ, ଖଦିପ୍ରସାର, ବର୍ଷକ ଭିତରେ ସ୍ୱରାଜ ପ୍ରାପ୍ତ ପାଇଁ ମହାତ୍ମାଗାନ୍ଧୀଙ୍କ ପ୍ରତିଶ୍ରୁତି, ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ହଜାର ହଜାର ଲୋକଙ୍କ କାରାବରଣ ବିଷୟରେ ସେ ଗାନ୍ଧୀଜୀଙ୍କୁ ବହୁ ପ୍ରଶ୍ନ ପଚାରିଥିଲେ ଏବଂ ଗାନ୍ଧିଜୀ ଧୀରସ୍ଥିର ଭାବରେ ସେ ସବୁର ଉତ୍ତର ଦେଇଥିଲେ ।

ଟିକସ୍ ବନ୍ଦ ଭଳି ଆନ୍ଦୋଳନ ବିଷୟରେ ଗାନ୍ଧିଜୀ ଯେଉଁ ଉତ୍ତର ଦେଇଥିଲେ ସେଥିରେ ସୁଭାଷଚନ୍ଦ୍ର ସନ୍ତୋଷ ଲାଭ କରିଥିଲେ ମାତ୍ର ଅନ୍ୟ କେତେକ ଉତ୍ତରରେ ତାଙ୍କର ହୃଦବୋଧ ହୋଇନଥିଲା । ସେ ଅନୁଭବ କରିଥିଲେ ଯେ ଗାନ୍ଧିଜୀ ସବୁକଥା ହୁଏତ ତାଙ୍କୁ ଫିଟେଇ କହିବାକୁ ଚାହୁଁ ନାହାନ୍ତି କିମ୍ବା ସଂପୂର୍ଣ୍ଣ କ୍ଷମତା ହାସଲର ପଦ୍ଧତି ଓ କୌଶଳ ସଂବନ୍ଧରେ ତାଙ୍କର ସ୍ପଷ୍ଟ ଧାରଣା ନଥିଲା । ଗାନ୍ଧିଜୀ ତାଙ୍କୁ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ସହିତ ସାକ୍ଷାତ କରି ତାଙ୍କ ନିର୍ଦ୍ଦେଶ ମତେ କାର୍ଯ୍ୟ କରିବାକୁ ପରାମର୍ଶ ଦେଇଥିଲେ ।

ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ସଙ୍ଗେ ପ୍ରଥମ ସାକ୍ଷାତ ଓ ଆଲୋଚନା ପରେ ସୁଭାଷ ଚନ୍ଦ୍ରଙ୍କ ହୃଦବୋଧ ହୋଇଥିଲା ଯେ ତାଙ୍କ ଚିନ୍ତାଧାରା ସ୍ପଷ୍ଟ ଏବଂ ନେତୃତ୍ୱ ଦେବାଭଳି ସମସ୍ତ ଗୁଣ ତାଙ୍କର ରହିଛି । ସେ ଦେଶସେବା ପାଇଁ ସମସ୍ତ ତ୍ୟାଗ କରିବା ପାଇଁ ପ୍ରସ୍ତୁତ ଥିଲେ ଓ ଅନ୍ୟମାନେ ସେହିପରି କରନ୍ତୁ ବୋଲି ସେ ଚାହୁଁଥିଲେ । ତାଙ୍କରି ନେତୃତ୍ୱରେ କାର୍ଯ୍ୟ କରିବା ପାଇଁ ସେ ଶେଷ ନିଷ୍ପତ୍ତି କଲେ । ଦେଶବନ୍ଧୁ ତାଙ୍କ ଭଳି ଉତ୍ସାହୀ ଶିକ୍ଷିତ ଯୁବକଙ୍କୁ ସ୍ୱାଗତ କରି ତାଙ୍କୁ ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ପ୍ରଚାର ଓ ସ୍ୱେଚ୍ଛାସେବକ ବାହିନୀର ଦାୟିତ୍ୱ ଅର୍ପଣ କରିଥିଲେ । ସେ ମଧ୍ୟ ତାଙ୍କୁ ନିକଟରେ ପ୍ରତିଷ୍ଠିତ ଜାତୀୟ କଲେଜର ଅଧ୍ୟକ୍ଷ ଦାୟିତ୍ୱ ଦେଇଥିଲେ, ସୁଭାଷଚନ୍ଦ୍ର ଏସବୁ ଦାୟିତ୍ୱ ଯେପରି ଦକ୍ଷତାର ସହିତ ପରିଚାଳନା କଲେ ସେଥିରେ ସମସ୍ତେ ସନ୍ତୋଷ ଲାଭ କରିଥିଲେ ।

୧୯୧୯ ମସିହା ମଣ୍ଟାଗୁ-ଚେମସ ଫୋର୍ଡ ଶାସନ ସଂସ୍କାରକୁ ସମଗ୍ର ଭାରତବାସୀ ତୀବ୍ର ବିରୋଧ କଲେ ମଧ୍ୟ ବ୍ରିଟିଶ ସରକାର ଏହାକୁ କାର୍ଯ୍ୟକାରୀ କରିବା ପାଇଁ ନିଷ୍ପତ୍ତି କଲେ । ଏହି ସମୟରେ ୧୯୨୧ ନଭେମ୍ବର ମାସରେ ବ୍ରିଟେନର ରାଜପୁତ୍ର ନଭେମ୍ବର ମାସରେ ଭାରତ ଭ୍ରମଣରେ ଆସିବେ ବୋଲି ଘୋଷଣା କରାଗଲା । ସେଦିନ ହରତାଳ ପାଳନ କରିବା ପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟି ଦେଶବାସୀଙ୍କୁ ଆହ୍ୱାନ କରିଥିଲେ । ସେ ବମ୍ବେ ଠାରେ ପହଞ୍ଚିବା ଦିନ ଦେଶର ଅନ୍ୟାନ୍ୟ ବଡ ବଡ ସହର ପରି କଲିକତାରେ ସଂପୂର୍ଣ୍ଣ ହରତାଳ ପାଳିତ ହୋଇଥିଲା । ସୁଭାଷ ଚନ୍ଦ୍ରଙ୍କ ନେତୃତ୍ୱରେ କଂଗ୍ରେସ ସ୍ୱେଚ୍ଛାସେବକମାନେ ଏହି ହରତାଳ ପାଳନର ନେତୃତ୍ୱ ନେଇ ଥିଲେ । ସମଗ୍ର କଲିକତା ସହର ସେଦିନ ସେମାନଙ୍କ ଅଧୀନରେ ଥିଲା ବୋଲି ମନେ ହେଉଥିଲା । ବଙ୍ଗଳାର ଏହି ସ୍ୱେଚ୍ଛାସେବକ ଅନୁଷ୍ଠାନକୁ ସରକାର ବେଆଇନ ଘୋଷଣା କରିଥିଲେ । ତା ଫଳରେ ଲୋକେ ଅଧିକ ଉତ୍ତେଜିତ ହେଲେ । କଂଗ୍ରେସ କମିଟି ସଭାପତି ଚିତ୍ତରଞ୍ଜନଙ୍କୁ ସମସ୍ତ କ୍ଷମତା ଦେଇ ଦେଲେ ଏବଂ ଚିତ୍ତରଞ୍ଜନ ସୁଭାଷ ଚନ୍ଦ୍ରଙ୍କୁ ଆନ୍ଦୋଳନର ସମସ୍ତ ଦାୟିତ୍ୱ ଅର୍ପଣ କରି ଦେଲେ । ଚିତ୍ତରଞ୍ଜନଙ୍କ ସହଧର୍ମିଣୀ ଶ୍ରୀମତୀ ବାସନ୍ତୀଦେବୀ ଓ ତାଙ୍କ ସହିତ ଦଳେ ନାରୀ ସ୍ୱେଚ୍ଛାସେବିକା ଆଇନ ଅମାନ୍ୟ କରି ଗିରଫ ହେବାପରେ ହଜାର ହଜାର ଲୋକ ଆଇନ ଅମାନ୍ୟ କରି ଗିରଫ ହେଲେ । ଜେଲ ଭର୍ତ୍ତି ହୋଇଗଲା । ୧୯୨୧ ଡିସେମ୍ବର ଦ୍ୱିତୀୟ ସପ୍ତାହରେ ସୁଭାଷଚନ୍ଦ୍ର ଗିରଫ ହେଲେ ଏବଂ ତାଙ୍କୁ ଛ ମାସ ଜେଲ ଦଣ୍ଡ ଆଦେଶ ହେଲା । କିଛି ଦିନ ପରେ ଦେଶବନ୍ଧୁ ଚିତ୍ତରଞ୍ଜନ ଗିରଫ ହୋଇଥିଲେ । ଦେଶବନ୍ଧୁ ଓ ସୁଭାଷଚନ୍ଦ୍ର ଏକାଠି ଆଲିପୁର କେନ୍ଦ୍ର ଜେଲରେ ରହିଲେ ।

## ସୁଭାଷ ଚନ୍ଦ୍ରଙ୍କ ପ୍ରଥମ ଜେଲ ଜୀବନ

ସୁଭାଷ ଚନ୍ଦ୍ରଙ୍କ ଜେଲ ଜୀବନ ତାଙ୍କ ପାଇଁ ଅତ୍ୟନ୍ତ ଶିକ୍ଷଣୀୟ ହୋଇଥିଲା । ତାଙ୍କନେତା ଦେଶବନ୍ଧୁଙ୍କ ସହିତ ସାତମାସ କାଳ ଏକାଠି ରହିବା ଭିତରେ ସେ ତାଙ୍କର ମହତ୍ତ୍ୱପୂର୍ଣ୍ଣ ଗୁଣ ଗୁଡ଼ିକ ଅଧ୍ୟୟନ ଓ ବିଶ୍ଳେଷଣ କରିବାର ସୁଯୋଗ ପାଇଲେ। ତାଙ୍କର ଲୋକ ପ୍ରିୟତା କାହିଁକି ବୃଦ୍ଧି ପାଇଲା ଓ ଜାତିଧର୍ମ ନିର୍ବିଶେଷରେ ସବୁ ଶ୍ରେଣୀର ଲୋକେ ତାଙ୍କ ନେତୃତ୍ୱ ଗ୍ରହଣ କରି ନେଲେ ତାହା ବିଶ୍ଳେଷଣ କରି ସୁଭାଷ ଚନ୍ଦ୍ର ଲେଖିଛନ୍ତି ଯେ ଚିତ୍ତରଞ୍ଜନ ଆନ୍ତରିକତା ସହିତ ତାଙ୍କ ସହକର୍ମୀମାନଙ୍କୁ ଶ୍ରଦ୍ଧା

କରୁଥିଲେ । ସେ କହୁଥିଲେ ଯେ ରାଜନୀତି ଅପେକ୍ଷା ଜୀବନ ଅଧିକ ମହାନ୍ । ତାଙ୍କର କୌଣସି ସହକର୍ମୀ ଦୁଃସ୍ଥ ବା ଅଭାବଗ୍ରସ୍ତ ହେଲେ ସେ ତାଙ୍କୁ ସବୁ ମତେ ସାହାଯ୍ୟ କରିବାର ବ୍ୟବସ୍ଥା କରନ୍ତି । ଦଳମତ ନିର୍ବିଶେଷରେ ସେ ସାହାଯ୍ୟ କରିଥାନ୍ତି ଏବଂ ସାହାଯ୍ୟ କଲାବେଳେ ସେ କୌଣସି ପାହିଆ ବା ଯୋଗ୍ୟତାର ବାଛ ବିଚାର କରନ୍ତି ନାହିଁ । ଯୁବକମାନଙ୍କ ପ୍ରତି ତାଙ୍କର ବିଶେଷ ଶ୍ରଦ୍ଧା ଥାଏ । ତେଣୁ ସବୁଶ୍ରେଣୀର ଲୋକେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିଥାନ୍ତି । ଦେଶବନ୍ଧୁ ଚିତ୍ତରଞ୍ଜନଙ୍କର ଏହିସବୁ ମହାନ୍ ଗୁଣ ସୁଭାଷ ଚନ୍ଦ୍ରଙ୍କୁ ସର୍ବୋତୋ ଭାବେ ତାଙ୍କ ପ୍ରତି ଆକୃଷ୍ଟ କରିଥିଲା । ଆଲିପୁର ଜେଲ ଭିତରେ ସେ ତାଙ୍କର ବ୍ୟକ୍ତିଗତ ସୁଖ ସୁବିଧା ପ୍ରତି ନିଜେ ଯତ୍ନ ନେଉଥିଲେ ଓ ସେ ଯେପରି ଆରାମ ଓ ଆନନ୍ଦରେ ରହନ୍ତି ତାହା ଦେଖୁଥିଲେ । ଚିତ୍ତରଞ୍ଜନଙ୍କ ପାଇଁ ସେ ସମୟ ସମୟରେ ରୋଷେଇ କରି ଦେଉଥିଲେ । ସୁଭାଷଚନ୍ଦ୍ରଙ୍କ ବ୍ୟକ୍ତିତ୍ୱ ଓ ଦକ୍ଷତା ପ୍ରତି ଚିତ୍ତରଞ୍ଜନଙ୍କ ସଂପୂର୍ଣ୍ଣ ବିଶ୍ୱାସ ଥିଲା ତେଣୁ ଗୁରୁତ୍ୱପୂର୍ଣ୍ଣ ଗଣ ଆନ୍ଦୋଳନ ବେଳେ ସେ ଆନ୍ଦୋଳନ ପରିଚାଳନାର ଦାୟିତ୍ୱ ତାଙ୍କ ଉପରେ ଛାଡି ଦେଉଥିଲେ ଏବଂ ସୁଭାଷ ଚନ୍ଦ୍ର ଚିତ୍ତରଞ୍ଜନଙ୍କ ପ୍ରତି ଶେଷ ପର୍ଯ୍ୟନ୍ତ ଅନୁରକ୍ତ ଥିଲେ ।

## ବିଶ୍ୱକବି ରବୀନ୍ଦ୍ରନାଥଙ୍କ ସହିତ ସୁଭାଷଙ୍କ ଆଲୋଚନା

ସୁଭାଷଚନ୍ଦ୍ର ଲଣ୍ଡନରୁ ଭାରତ ଫେରୁଥିବା ବେଳେ ଯେଉଁ ଜାହାଜରେ ବସି ଆସୁଥିଲେ, ଘଟଣାକ୍ରମେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ସେହି ଜାହାଜରେ ଫେରୁଥିଲେ । ଜାହାଜ ଭିତରେ ଉଭୟଙ୍କ ଭିତରେ ଯେଉଁ ଆଲୋଚନା ହୋଇଥିଲା ତାହା ଏକ ଚିତ୍ତାକର୍ଷକ ଓ ଐତିହାସିକ ଘଟଣା । ରବୀନ୍ଦ୍ରନାଥ ଅସହଯୋଗ ଆନ୍ଦୋଳନର ବିରୋଧ କରୁଛନ୍ତି ବୋଲି ସେତେବେଳେ ସମସ୍ତଙ୍କ ଭିତରେ ଧାରଣା ଥିଲା । ସୁଭାଷ ଚନ୍ଦ୍ର ଏ ସଂପର୍କରେ ତାଙ୍କ ସହିତ ଆଲୋଚନାରୁ ଜଣାପଡିଲା ଯେ ରବୀନ୍ଦ୍ରନାଥ ମୌଳିକ ନୀତି ଦୃଷ୍ଟିରୁ ଅସହଯୋଗ ଆନ୍ଦୋଳନର ବିରୋଧୀ ନଥିଲେ ମାତ୍ର ଏହି ଆନ୍ଦୋଳନ ବିଷୟରେ ତାଙ୍କର କେତେକ ମତ ଭେଦ ଥିଲା । ରବୀନ୍ଦ୍ରନାଥଙ୍କ ମତରେ କଂଗ୍ରେସ ଅନୁଷ୍ଠାନ ଅଧିକ ପରିମାଣରେ ଗଠନମୂଳକ କାର୍ଯ୍ୟକ୍ରମ ହାତକୁ ନେବା ଉଚିତ ଯାହାଫଳରେ ଗୋଟିଏ ରାଷ୍ଟ୍ର ଭିତରେ ଆଉ ଗୋଟିଏ ରାଷ୍ଟ୍ର ଲୋକଙ୍କ ସକ୍ରୀୟ ସହଯୋଗରେ ପ୍ରତିଷ୍ଠିତ ହୋଇପାରିବ । ରବୀନ୍ଦ୍ରନାଥ ଯାହା କହୁଛନ୍ତି ସେହିପରି କାର୍ଯ୍ୟକ୍ରମ ଆୟର୍ଲାଣ୍ଡର ସିନ୍‌ଫେନ୍ ଆନ୍ଦୋଳନ ବେଳେ ଅନୁସରଣ କରାଯାଇଥିଲା ବୋଲି ମତପ୍ରକାଶ କରିଥିଲେ । ଏହାଛଡା ବିଶ୍ୱ ସଂସ୍କୃତି ଭିତରେ ସମନ୍ୱୟ ପ୍ରତିଷ୍ଠିତ ହେବା ବାଞ୍ଛନୀୟ ଏବଂ ଭାରତର ସ୍ୱାଧୀନତା ସଂଗ୍ରାମ ପାଶ୍ଚାତ୍ୟ ବିଜ୍ଞାନ, ସଂସ୍କୃତି ଓ ସଭ୍ୟତାକୁ ଦୂରେଇ ରଖିବା ଉଚିତ ନୁହେଁ ବୋଲି ରବୀନ୍ଦ୍ରନାଥଙ୍କ ମତାମତ ସହ ସୁଭାଷ ଚନ୍ଦ୍ର ଏକମତ ହୋଇଥିଲେ ।

## ଶ୍ରମିକ ଆନ୍ଦୋଳନରେ ତାଙ୍କର ପ୍ରଥମ ଭୂମିକା

୧୯୨୧ ମସିହା ଶେଷ ଭାଗରେ ଦେଶବନ୍ଧୁ ଚିତ୍ତରଞ୍ଜନ ଓ ସୁଭାଷ ଚନ୍ଦ୍ର କାରାବରଣ କରିଥିଲାବେଳେ ଭାରତର ରାଜନୈତିକ ପରିସ୍ଥିତି ଅଧିକ ଉତ୍ତେଜନାପୂର୍ଣ୍ଣ ହୋଇ ଉଠିଥିଲା । ମହାତ୍ମାଗାନ୍ଧୀ ସେତେବେଳର ବଡଲାଟ ଲର୍ଡ ରିଡିଙ୍ଗଙ୍କୁ ଏକ ଚରମ ପତ୍ରରେ ଜଣାଇ ଦେଇଥିଲେ ଯେ ବ୍ରିଟିଶ ସରକାରଙ୍କର ହୃଦୟ ପରିବର୍ତ୍ତନ ନହେଲେ ସେ ତାଙ୍କ ସଂଗ୍ରାମର ଶେଷ କାର୍ଯ୍ୟକ୍ରମ ଅର୍ଥାତ୍ ଟିକସ ବନ୍ଦ ଆନ୍ଦୋଳନ ଆରମ୍ଭ କରିବେ । ବଙ୍ଗଳା ସମେତ ସମଗ୍ର ଦେଶରେ ଟିକସ ବନ୍ଦ ଆନ୍ଦୋଳନ ପାଇଁ ପ୍ରସ୍ତୁତି ଚାଲିଥିଲା । ଆନ୍ତର୍ଜାତୀୟ ପରିସ୍ଥିତି ମଧ୍ୟ ଭାରତର ଅନୁକୂଳ ଥିଲା । ଏହି ସମୟରେ ଭାରତର ବଡଲାଟ ଭାରତ ସହିତ ମିଳାମିଶା ପାଇଁ ଏକ ପ୍ରସ୍ତାବ ଜେଲ୍ ଭିତରେ ଚିତ୍ତରଞ୍ଜନଙ୍କ ସହିତ ଆଲୋଚନା କରିବା ସକାଶେ ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ଜରିଆରେ ପଠାଇଥିଲେ । ଚିତ୍ତରଞ୍ଜନ ସୁଭାଷଚନ୍ଦ୍ର ତଥା ଅନ୍ୟ ସହଯୋଗୀ ମାନଙ୍କ ସହିତ ଆଲୋଚନା କରିବାପରେ ଏହି ପ୍ରସ୍ତାବକୁ ଗ୍ରହଣ କରିବା ପାଇଁ ରାଜି ହୋଇଥିଲେ ।

ଏ ସଂପର୍କରେ ଚିତ୍ତରଞ୍ଜନ ଓ ମୌଲାନା ଆଜାଦ ଏକ ମିଳିତ ମତାମତ ମହାତ୍ମାଗାନ୍ଧୀଙ୍କ ସମ୍ମତି ପାଇଁ ପଠାଇଥିଲେ ମାତ୍ର ଗାନ୍ଧିଜୀ ସେଥିରେ ରାଜି ନ ହେବାରୁ ଅଚଳାବସ୍ଥା ଲାଗି ରହିଲା, ଏହି ସମୟରେ ଗାନ୍ଧିଜୀ କଂଗ୍ରେସ ପାଇଁ ଯେଉଁ ସଂବିଧାନ ପ୍ରସ୍ତୁତ କଲେ ସେଥିରେ କଂଗ୍ରେସ ଅନୁଷ୍ଠାନ ଭାରତର ଏକ ଗଣ ଅନୁଷ୍ଠାନରେ ପରିଣତ ହେଲା । ଏଥିରେ ସୁଭାଷ ଚନ୍ଦ୍ର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ତ୍ରିରଙ୍ଗ ପତାକା ଜାତୀୟ ପତାକାରେ ପରିଣତ ହେଲା ଖଦି ଜାତୀୟ ପୋଷାକ ଭାବରେ ପରିଚିତ ହୋଇଥିଲା ଏବଂ ଗୋଟିଏ ପ୍ରକାର ଜାତୀୟ ଧ୍ୱନି ଓ କାର୍ଯ୍ୟକ୍ରମ ଭାରତର ସର୍ବତ୍ର ପ୍ରଚଳିତ ହେଲା । କଂଗ୍ରେସ ଅନୁଷ୍ଠାନକୁ ଏହିଭଳି ମହାନ୍ ରୂପରେ ଦେଖିବା ପାଇଁ ଆଇ.ସି.ଏସ. ଭଳି ଲୋଭନୀୟ ଚାକିରିକୁ ପଦାଘାତ କରିଦେଇ ଆସିଥିଲେ ବିପ୍ଳବୀ ସୁଭାଷ ଚନ୍ଦ୍ର ବୋଷ ।

୧୯୨୨ ପ୍ରଥମ ପାଦରେ ଭାରତର ରାଜନୈତିକ ଅବସ୍ଥା ଏକ ଅନିଶ୍ଚିତ ଅବସ୍ଥା ଭିତରେ ଗତି କରୁଥିଲା । ବଡଲାଟ ମିଳାମିଶା ପାଇଁ ଦେଇଥିବା ତାଙ୍କ ପ୍ରସ୍ତାବ ପ୍ରତ୍ୟାହାର କରିନେଲେ ଏବଂ ମହାତ୍ମାଗାନ୍ଧୀ ଟିକସବନ୍ଦ ଆନ୍ଦୋଳନ ପାଇଁ ଚରମପତ୍ର ଦେଇଥିଲେ । ଏହି ଅବସ୍ଥାରେ ଉତ୍ତରପ୍ରଦେଶର ଚଉରୀଚଉରା ଠାରେ ଗାଁର ଲୋକେ ଗୋଟିଏ ଘଟଣାରେ ଉତ୍ତ୍ୟକ୍ତ ହୋଇ ଗୋଟିଏ ପୋଲିସ ଷ୍ଟେସନ ପୋଡିଦେଇ କେତେକ ପୋଲିସ ଲୋକଙ୍କୁ ହତ୍ୟା କରିଥିଲେ । ଗାନ୍ଧିଜୀ ଏହି ଘଟଣାରେ ଅତ୍ୟନ୍ତ ମର୍ମାହତ ହେଲେ ତାଙ୍କ ନିର୍ଦ୍ଦେଶରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଅସହଯୋଗ ଆନ୍ଦୋଳନ ସ୍ଥଗିତ ରଖିଦେବା ପାଇଁ ଏକ ପ୍ରସ୍ତାବ ଗ୍ରହଣ କଲେ । ଏହି ସମୟରେ ସ୍ୱାଧୀନତା ସଂଗ୍ରାମୀ ସୁଭାଷ ଚନ୍ଦ୍ର ବଙ୍ଗଳାର ଆଲିପୁର ଜେଲରେ ଥିଲେ । ଏହି ପ୍ରସ୍ତାବ ଶୁଣି ସେ ଦୁଃଖ ଓ କ୍ରୋଧରେ ଅଧୀର ହୋଇ ପଡିଥିଲେ । ସେତେବେଳର ବଡଲାଟ ଏହାର ସୁବିଧା ନେଇ ଦେଶର ବହୁ ସ୍ୱାଧୀନତା ସଂଗ୍ରାମୀଙ୍କୁ ଗିରଫ କରି ନେଇଥିଲେ । ମହାତ୍ମାଗାନ୍ଧୀଙ୍କୁ ଗିରଫ କରି ନିଆଯାଇଥିଲା । ଏହି ସମୟରେ ଦେଶବନ୍ଧୁ ଚିତ୍ତରଞ୍ଜନ ବ୍ୟବସ୍ଥା ସଭା ଭିତରେ କଂଗ୍ରେସ ଲୋକେ ପ୍ରବେଶ କରି ସରକାରଙ୍କ ବେଆଇନ କାର୍ଯ୍ୟ ଓ କାରସାଦିକୁ ପଣ୍ଡ କରିଦେବାପାଇଁ ଏକ ପରିକଳ୍ପନା ପ୍ରସ୍ତୁତ କରିଥିଲେ । ଅନ୍ୟମାନଙ୍କ ଭିତରେ ପଣ୍ଡିତ ମୋତିଲାଲ ନେହେରୁ ତାଙ୍କୁ ସମର୍ଥନ କଲେ । ଏମାନଙ୍କୁ କୁହାଗଲା ପରିବର୍ତ୍ତନ ସପକ୍ଷବାଦୀ ଏବଂ ଯେଉଁମାନେ ଏହାର ବିରୋଧ କଲେ ସେମାନଙ୍କୁ କୁହାଗଲା ପରିବର୍ତ୍ତନର ବିରୋଧପକ୍ଷ । ସୁଭାଷଚନ୍ଦ୍ର ଚିତ୍ତରଞ୍ଜନଙ୍କ ଏ ପ୍ରସ୍ତାବକୁ ସମର୍ଥନ କରିଥିଲେ । ଏହି ପ୍ରସ୍ତାବ ସଂପର୍କରେ ମତ ସଂଗ୍ରହ ପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟି ଏକ ଅନୁସନ୍ଧାନ କମିଟି ଗଠନ କଲେ ।

ସୁଭାଷ ଚନ୍ଦ୍ର ଜେଲରୁ ଖଲାସ ହୋଇ ବାହାରେ ରହିଥିବାବେଳେ ବଙ୍ଗଳାର ଉତ୍ତର ଜିଲ୍ଲାମାନଙ୍କରେ ଭୀଷଣ ବନ୍ୟା ହେଲା । ବଙ୍ଗଳାର କଂଗ୍ରେସ ଅନୁଷ୍ଠାନ ତତ୍‌ପରତା ପ୍ରକାଶ କରି ରିଲିଫ ସାମଗ୍ରୀ ସହିତ କଂଗ୍ରେସ ସୁଭାଷଚନ୍ଦ୍ରଙ୍କ ନେତୃତ୍ୱରେ ଦଳେ ସ୍ୱେଚ୍ଛାସେବକଙ୍କୁ ବନ୍ୟା ପ୍ରପୀଡିତ ଅଞ୍ଚଳକୁ ପଠାଇ ଥିଲେ । ସେମାନେ ଯେଉଁ ପରିମାଣରେ ସାହାଯ୍ୟ ଦେଲେ ତା ତୁଳନାରେ ସରକାରୀ ସାହାଯ୍ୟ ଥିଲା ଅତି ଅଳ୍ପ ।

## ଶ୍ରମିକ ଓ ଯୁବକମାନଙ୍କୁ ନେତୃତ୍ୱ

୧୯୨୨ ଶେଷ ଭାଗରେ ସୁଭାଷଚନ୍ଦ୍ର ତାଙ୍କ ରାଜନୈତିକ ଜୀବନର ଏକ ନୂତନ ଅଧ୍ୟାୟ ଆରମ୍ଭ କଲେ । ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ନେତୃତ୍ୱରେ ଏହି ସମୟରେ ଅନୁଷ୍ଠିତ ନିଖିଳ ଭାରତ ଶ୍ରମିକ କଂଗ୍ରେସ ଅଧିବେଶନରେ ସୁଭାଷ ସକ୍ରୀୟ ଅଂଶ ଗ୍ରହଣ କଲେ । ୧୯୩୧ ମସିହାରେ ସେ ଏହି ମହାନ ଜାତୀୟ ଶ୍ରମିକ ଅନୁଷ୍ଠାନର ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ । ପରେ ସେ ଟାଟା କମ୍ପାନୀ ଶ୍ରମିକ ସଂଘର ସଭାପତି ନିର୍ବାଚିତ ହୋଇଥିଲେ ।ସେହି ସମୟରେ କଲିକତା ଯୁବକ ସମ୍ମିଳନୀ ତାଙ୍କ ନେତୃତ୍ୱରେ ଅନୁଷ୍ଠିତ ହେଲା । ଏହି ପରି ତାଙ୍କ ଅପୂର୍ବ ସଂଗଠନ ଶକ୍ତି ଓ ଦକ୍ଷତା ବଳରେ ସୁଭାଷ ଚନ୍ଦ୍ର ବଙ୍ଗଳାର ଅପ୍ରତିଦ୍ୱନ୍ଦ୍ୱୀ

ଯୁବ ନେତା ଭାବରେ ପରିଚିତ ହୋଇଥିଲେ । ଏହି ଦଶନ୍ଧୀର ଶେଷ ଭାଗରେ ଭାରତରେ ଯୁବଶକ୍ତିର ଯେଉଁ ଅଭ୍ୟୁଦୟ ହେଲା ତାର ନେତୃତ୍ୱ ନେଲେ ପଣ୍ଡିତ ଜବାହର ଲାଲ ନେହେରୁ ଓ ସୁଭାଷ ଚନ୍ଦ୍ର ବୋଷ ।

୧୯୨୨ ମସିହା ଗୟା କଂଗ୍ରେସ ଅଧିବେଶନରେ ଚିତ୍ତରଂଜନ ବ୍ୟବସ୍ଥା ସଭାରେ କଂଗ୍ରେସ ଲୋକେ ପ୍ରବେଶ ପାଇଁ ଯେଉଁ ପ୍ରସ୍ତାବ ଆଗତ କରିଥିଲେ ତାହା ଅଗ୍ରାହ୍ୟ ହୋଇଗଲା । ସେତେବେଳେ ଚିତ୍ତରଞ୍ଜନଙ୍କ ଦୃଢ ସମର୍ଥକ ସୁଭାଷ ଚନ୍ଦ୍ର ମତ ପ୍ରକାଶ କରିଥିଲେ ଯେ, ଆମେ ପରାସ୍ତ ହେଲୁ ମାତ୍ର ଏଥିପାଇଁ ସଂଗ୍ରାମ କରି ବିଜୟୀ ହେବୁ ବୋଲି ପଣ କରି ଫେରି ଥିଲୁ ।

## କଲିକତା କର୍ପୋରେସନର ମୁଖ୍ୟ କର୍ମକର୍ତ୍ତା

ସୁଭାଷ ଚନ୍ଦ୍ର ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ସହିତ ଗୟା କଂଗ୍ରେସରୁ ଫେରିବାପରେ ଦେଖିଲେ ଯେ ବଙ୍ଗଳାରେ ସେମାନଙ୍କ ସ୍ଥିତି ଦୁର୍ବଳ ହୋଇପଡିଥିଲା ବଙ୍ଗଳା କଂଗ୍ରେସ କମିଟିରେ ସେମାନଙ୍କ ସପକ୍ଷବାଦୀଙ୍କ ସଂଖ୍ୟା ଅଳ୍ପ ଥିଲା ଏବଂ ବ୍ୟବସ୍ଥାପକ ସଭାରେ ପ୍ରବେଶ ନ କରିବାକୁ ଚାହୁଁଥିବା ସଭ୍ୟଙ୍କ ସଂଖ୍ୟା ଥିଲା ଅଧିକ ମାତ୍ର ସେଥିରେ ସେମାନେ ଦବି ନଯାଇ ପ୍ରଚାର ଚଳେଇଲେ । ଏଥିପାଇଁ ତାଙ୍କୁ କଠିନ ପରିଶ୍ରମ କରିବାକୁ ପଡିଲା । ପୂର୍ବରୁ ସାଧାରଣ ଲୋକଙ୍କ ଭିତରେ ସେମାନଙ୍କର ଅଧିକ ପ୍ରଭାବ ରହିଥିଲା । ଶେଷରେ ୧୯୨୩ ମସିହା ସେପ୍ଟେମ୍ବର ମାସରେ ଦିଲ୍ଲୀଠାରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ସ୍ୱତନ୍ତ୍ର ଅଧିବେଶନରେ ମହାତ୍ମାଗାନ୍ଧୀଙ୍କ ସମ୍ମତି କ୍ରମେ କଂଗ୍ରେସ କର୍ମୀମାନେ ବ୍ୟବସ୍ଥାପକ ସଭା ନିର୍ବାଚନରେ ଭାଗ ନେଇ ପାରିବେ ଓ ବ୍ୟବସ୍ଥା ସଭା ଭିତରେ ସରକାରଙ୍କର ନୀରବଚ୍ଛିନ୍ନ ବିରୋଧ କରିବେ ବୋଲି ଏକ ପ୍ରସ୍ତାବ ଗୃହୀତ ହେଲା । ଏଥିରେ ସ୍ୱରାଜ ଦଳର ସମର୍ଥକମାନେ ଉଲ୍ଲେଖ ଯୋଗ୍ୟ ସଫଳତା ହାସଲ କଲେ ଏବଂ ଅତ୍ୟନ୍ତ ଉତ୍ସାହର ସହିତ କାର୍ଯ୍ୟ କରିଥିଲେ । ଏହାପରେ ବିଭିନ୍ନ ରାଜ୍ୟ ତଥା କେନ୍ଦ୍ର ବ୍ୟବସ୍ଥାସଭା ନିର୍ବାଚନରେ କଂଗ୍ରେସ ଦଳ ଅଂଶ ଗ୍ରହଣ କରି ସଫଳତା ହାସଲ କଲେ । କେନ୍ଦ୍ର ବ୍ୟବସ୍ଥା ସଭାରେ ପଣ୍ଡିତ ମୋତିଲାଲନେହେରୁ କଂଗ୍ରେସ ଦଳର ନେତା ଏବଂ ବଙ୍ଗଳା ବ୍ୟବସ୍ଥା ସଭାରେ ଦେଶବନ୍ଧୁ ଚିତ୍ତରଞ୍ଜନ ନେତା ନିର୍ବାଚିତ ହେଲେ । କଲିକତାରେ ଚିତ୍ତରଞ୍ଜନ 'ଫରୱାର୍ଡ ନାମକ ଏକ ଦୈନିକ ପତ୍ରିକା ପ୍ରକାଶ କରି ଏହାର ପରିଚାଳନା ଓ ସଂପାଦନା ଦାୟିତ୍ୱ ସୁଭାଷ ଚନ୍ଦ୍ରଙ୍କ ଉପରେ ନ୍ୟସ୍ତ କଲେ । ଇତିମଧ୍ୟରେ ସୁଭାଷ ଚନ୍ଦ୍ର ବଙ୍ଗ ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସଂପାଦକ ଭାବରେ ନିଯୁକ୍ତ ହୋଇଥିଲେ ଓ ବିଭିନ୍ନ ସ୍ଥାନରେ ଯୁବ ଅନୁଷ୍ଠାନମାନ ଗଠନ କରିବାରେ ନେତୃତ୍ୱ ନେଇଥିଲେ ।

୧୯୨୪ ବର୍ଷଟି ସ୍ୱରାଜ ମତବାଦୀଙ୍କ ପାଇଁ ଏକ ଉତ୍ସାହ ଓ ଆଶାର ବର୍ଷରେ ପରିଣତ ହୋଇଥିଲା । ସେ ବର୍ଷ କଲିକତା କର୍ପୋରେସନ ପାଇଁ ନିର୍ବାଚନ ହେଲା । ଏହି ନିର୍ବାଚନରେ ସ୍ୱରାଜ ଦଳ ଅଧିକାଂଶ ସ୍ଥାନରେ ବିଜୟୀ ହେଲେ । ଦେଶବନ୍ଧୁ ଚିତ୍ତରଞ୍ଜନ କଲିକତା କର୍ପୋରେସନର ମେୟର ନିର୍ବାଚିତ ହେଲେ ଓ ସେ ସୁଭାଷ ଚନ୍ଦ୍ରଙ୍କୁ ଚିଫ୍ ଏକ୍‌ଜିକିଉଟିଭ ଅଫିସର ନିଯୁକ୍ତ କଲେ । ତାଙ୍କ ନିଯୁକ୍ତିରେ ସେତେବେଳର ରାଜ୍ୟ ସରକାର ଘୋର ବିରକ୍ତି ପ୍ରକାଶ କରିଥିଲେ । ଚିତ୍ତରଞ୍ଜନ ଓ ସୁଭାଷ ଚନ୍ଦ୍ର ମିଶି କଲିକତା କର୍ପୋରେସନକୁ ସମଗ୍ର ଦେଶରେ ଏକ ଆଦର୍ଶ ନଗର ଉନ୍ନୟନ ସଂସ୍ଥାରେ ପରିଣତ କରିବା ପାଇଁ କାର୍ଯ୍ୟ ଆରମ୍ଭ କରିଥିଲେ । ପ୍ରଥମଥର ପାଇଁ ଖଦିବସ୍ତ୍ର କର୍ପୋରେସନର କର୍ମଚାରୀମାନଙ୍କର ସରକାରୀ ପୋଷାକ ରୂପେ ସ୍ୱୀକୃତ ହେଲା ଏବଂ କଲିକତାର ବହୁ ରାସ୍ତା ଓ ଗଳି ଆଗେ ଯାହା ଇଂରେଜ ଶାସକମାନଙ୍କ ନାମରେ ନାମିତ ହୋଇଥିଲା ସେଗୁଡିକ ଭାରତର ବିଶିଷ୍ଟ ନେତାମାନଙ୍କ ନାମରେ ନାମିତ ହେଲା । ସେହିପରି ବ୍ରିଟିଶ ଶାସକଙ୍କୁ ଦିଆଯାଉଥିବା ନାଗରିକ ସଂବର୍ଦ୍ଧନା ବନ୍ଦ କରାଯାଇ ଭାରତରେ ବିଶିଷ୍ଟ ନେତାମାନଙ୍କୁ ସଂବର୍ଦ୍ଧନା ଦିଆଯିବା ପାଇଁ ନିଷ୍ପତ୍ତି କରାଗଲା । ସମଗ୍ର କଲିକତାରେ ମାଗଣା ପ୍ରାଥମିକ ଶିକ୍ଷା ପ୍ରବର୍ତ୍ତନ କରାଗଲା ଓ କର୍ପୋରେସନ ସହରର ବିଭିନ୍ନ ସ୍ଥାନରେ ମାଗଣା ଚିକିତ୍ସା କେନ୍ଦ୍ରମାନ

ସ୍ଥାପନ କରାଯାଇଥିଲା । କର୍ପୋରେସନର ମୁଖ୍ୟ କର୍ମକର୍ତ୍ତା ଭାବରେ ସୁଭାଷ ଚନ୍ଦ୍ର ଚାରିଆଡ଼େ ବୁଲି ଜଳଯୋଗାଣ ବସ୍ତି, ସଫେଇ, ଶିକ୍ଷା ଓ ସ୍ୱାସ୍ଥ୍ୟ ବ୍ୟବସ୍ଥା ପରିଦର୍ଶନ କରିବାରେ ଅବିଶ୍ରାନ୍ତ ପରିଶ୍ରମ କରିଥିଲେ । ସେ ତାଙ୍କ ଦରମାରୁ ଅଧେ ନେଉଥିଲେ ଏବଂ ଅବଶିଷ୍ଟ ଅଧେ ବିଭିନ୍ନ ଦାତବ୍ୟ କାର୍ଯ୍ୟ ପାଇଁ ଦେଇ ଦେଉଥିଲେ ।

ଚିତ୍ତରଞ୍ଜନ ଓ ସୁଭାଷ ଚନ୍ଦ୍ର କର୍ପୋରେସନ ପରିଚାଳନା ଦାୟିତ୍ୱରେ ଥିଲାବେଳେ ମୁସଲମାନମାନଙ୍କ ପ୍ରତି ଚାକିରି ଓ ଅନ୍ୟାନ୍ୟ କ୍ଷେତ୍ରରେ ଯେଉଁ ଅନ୍ୟାୟ ଓ ଅବିଚାର କରାଯାଇଥିଲା, ତାକୁ ଦୂର କରିବାପାଇଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ ଯାହାକି ବଙ୍ଗଳା ଚୁକ୍ତି ନାମରେ ପରିଚିତ । ଏଥିରେ ରାଜନୈତିକ ତଥା ଧର୍ମ ସଂବନ୍ଧୀୟ ସମସ୍ୟାର ସମାଧାନ କରାଯାଇଥିଲା । ୧୯୨୪ ମଇ ମାସରେ ସିରାଜଗଞ୍ଜ ସମ୍ମିଳନୀରେ ଏହା ଘୋଷଣା କରାଯାଇଥିଲା । ଏହା ଫଳରେ ବହୁ ମୁସଲମାନ ଚାକିରି ଏବଂ ଅନ୍ୟାନ୍ୟ ସୁବିଧା ପାଇଥିଲେ । ଲକ୍ଷ୍ୟ କରିବା କଥା ଯେ ସୁଭାଷ ଚନ୍ଦ୍ର ତାଙ୍କର ସମଗ୍ର ରାଜନୈତିକ ଜୀବନରେ ଏହି ପରମ୍ପରା ଅନୁସରଣ କରି କାର୍ଯ୍ୟ କରିଥିଲେ ଏବଂ ସାମ୍ପ୍ରଦାୟିକ ସମସ୍ୟା ଗୁଡିକ ନ୍ୟାୟ ଓ ଉଦାର ଦୃଷ୍ଟିରୁ ସମାଧାନ କରିଦେଉଥିଲେ । ଏହି ସମ୍ମିଳନୀରେ ଆଉ ଗୋଟିଏ ଗୁରୁତ୍ୱ ପୂର୍ଣ୍ଣ ବିଷୟରେ ପ୍ରସ୍ତାବ ଗୃହୀତ ହୋଇଥିଲା ଏବଂ ତାହା ହେଲା ବୈପ୍ଳବିକ ଆତଙ୍କବାଦ ସଂପର୍କରେ ତାଙ୍କର ମତ । ସେହି ସମୟରେ ଗୋପୀନାଥ ସାହା ନାମରେ ଜଣେ ବିପ୍ଳବୀ ଗୋଷ୍ଠୀର ଛାତ୍ର କଲିକତା ପୋଲିସ କମିଶନରଙ୍କୁ ହତ୍ୟା କରିବା ପାଇଁ ଉଦ୍ୟମ କରିଥିଲା । ଏ ସଂପର୍କରେ ମତ ପ୍ରକାଶ କରି ଚିତ୍ତରଞ୍ଜନ କହିଥିଲେ ଯେ ସେମାନେ ଜାତୀୟ ସ୍ୱାଧୀନତା ସଂଗ୍ରାମରେ କୌଣସି ଅବସ୍ଥାରେ ଆତଙ୍କବାଦକୁ ଅସ୍ତ୍ରରୂପେ ବ୍ୟବହାର କରିବାକୁ ସମର୍ଥନ କରନ୍ତି ନାହିଁ ମାତ୍ର ଜାତୀୟ ସଂଗ୍ରାମ ବେଳେ ଏହିପରି କାର୍ଯ୍ୟ ଅନିବାର୍ଯ୍ୟ ହୋଇପଡିଥାଏ ଏବଂ କେତେକ ଆଦର୍ଶବାଦୀ ଯୁବକ ଏହିପରି ଦେଶ ପାଇଁ ଆତ୍ମବଳି ଦେଇଥାନ୍ତି । ଏହି ବିପ୍ଳବୀମାନଙ୍କର ଦେଶପ୍ରେମ, ଆଦର୍ଶବାଦ ଓ ଆତ୍ମୋତ୍ସର୍ଗ ପ୍ରତି ଆମର ଗଭୀର ସମ୍ମାନ ରହିଛି, ଯଦିଓ ସେମାନେ ଯେଉଁପନ୍ଥା ଅନୁସରଣ କରୁଛନ୍ତି ତାକୁ ଆମେ ସମର୍ଥନ କରୁନାହୁଁ ।

## ମାଣ୍ଡାଲେ ଜେଲରେ ସୁଭାଷଚନ୍ଦ୍ର

୧୯୨୪ ମସିହା ମଧ୍ୟଭାଗ ବେଳକୁ ସମଗ୍ର ବଙ୍ଗଦେଶରେ ସ୍ୱରାଜ ଦଳ ଓ ଏହାର ନେତା ଦେଶବନ୍ଧୁ ଚିତ୍ତରଞ୍ଜନ ଏବଂ ଯୁବନେତା ସୁଭାଷଙ୍କ ପ୍ରତି ଶ୍ରଦ୍ଧା ଓ ସମର୍ଥନ ବହୁଳ ଭାବରେ ବୃଦ୍ଧି ପାଇଥିଲା ତେଣୁ ସେହି ସମୟରେ କଲିକତାରେ ସ୍ୱରାଜ ଦଳର ଯେଉଁ ସମ୍ମିଳନୀ ହେଲା ସେଥିରେ ବହୁ ଅଧିକ ଲୋକ ଯୋଗ ଦେଇଥିଲେ, ଉତ୍ସାହ ଓ ଉନ୍ମାଦନା ପ୍ରକାଶ ପାଇଥିଲା । ଏହିଭଳି ଅବସ୍ଥାକୁ ବଙ୍ଗ ସରକାର ଆଉ ବରଦାସ୍ତ କରିପାରିଲେନାହିଁ । ବ୍ରିଟିଶ ସରକାରଙ୍କ ସମର୍ଥକ କେତେକ ଇଂରେଜୀ ସଂବାଦପତ୍ର ଅଭିଯୋଗ କଲେ ଯେ ବ୍ରିଟିଶ ଶାସନର ପତନ ପାଇଁ ଏକ ବୈପ୍ଳବିକ ଷଡଯନ୍ତ୍ର ଚାଲିଛି ଏବଂ ସୁଭାଷଚନ୍ଦ୍ର ବୋଷ ହେଲେ ଏହାର ନେତା । ତେଣୁ ସୁଭାଷ ଚନ୍ଦ୍ରଙ୍କୁ ୧୯୨୪ ମସିହାରେ ଗିରଫ କରି ନିଆଯାଇଥିଲା । ଭାରତ ଉପକୂଳରୁ ଜାହାଜରେ ବର୍ମାର ମାଣ୍ଡାଲେ ଜେଲକୁ ଯାଉଥିବା ବେଳେ ସୁଭାଷ ମନେ ପକାଇଥିଲେ ଯେ ଏହି ଜେଲରେ ସ୍ୱାଧୀନତା ସଂଗ୍ରାମର ମନ୍ତ୍ରଦାତା ଲୋକମାନ୍ୟ ତିଳକ ଛବର୍ଷ ଓ ଲାଲା ଲଜପତରାୟ ଦର୍ଷେ ରହିଥିଲେ । ସେହି ଜେଲରେ ରହିବାକୁ ସେ ଯାଉଥିବାରୁ ଗର୍ବ ଅନୁଭବ କରିଥିଲେ । ସୁଭାଷ ଚନ୍ଦ୍ରଙ୍କ ଗିରଫର ପ୍ରତିବାଦରେ କଲିକତା କର୍ପୋରେସନରେ ଯେଉଁ ପ୍ରତିବାଦ ସଭା ହୋଇଥିଲା ସେଥିରେ ଭାଷଣ ଦେଇ ଦେଶବନ୍ଧୁ ଚିତ୍ତରଞ୍ଜନ କହିଥିଲେ ଯେ ଯଦି ଦେଶପ୍ରେମ ଅପରାଧ ହୁଏ ତେବେ ମୁଁ ଜଣେ ଅପରାଧୀ ।

ଦୁଃଖଦାୟକ ଜେଲଜୀବନ ଅତିବାହିତ କରୁଥିବାବେଳେ ସୁଭାଷ ଚନ୍ଦ୍ର ଗଭୀର ଭାବରେ ଆତ୍ମ ପରୀକ୍ଷା କରିଥିଲେ । ତାଙ୍କ ଜେଲ ଡାଏରୀରୁ ଜଣାଯାଏ ଯେ ମାଣ୍ଡାଲେ ଜେଲଭିତରେ ରହିଥିବା ବେଳେ ଏକୁଟିଆ

ଜେଲ ଭିତରେ ବସି ସେ ବହୁ ବିଷୟରେ ପୁସ୍ତକ ଅଧ୍ୟୟନ କରିଥିଲେ ଓ ଲେଖିଥିଲେ । ସେ ଦର୍ଶନ ଓ ଧର୍ମ, ଇତିହାସ ଓ ରାଜନୀତି, ବିଜ୍ଞାନ, ଅର୍ଥନୀତି, ସମାଜନୀତି, କଳା ଓ ସଂସ୍କୃତି ସଂବନ୍ଧୀୟ ପୁସ୍ତକମାନ ଅଧ୍ୟୟନ କରିଥିଲେ । ଏହା ଛଡା ସେ ରବୀନ୍ଦ୍ର ସଂଗୀତ, ଶିକ୍ଷା, ସାଧାରଣ ସ୍ୱାସ୍ଥ୍ୟରକ୍ଷା, ଜେଲ ସଂସ୍କାର ଓ ନଗର ଉନ୍ନୟନ ସଂବନ୍ଧୀୟ ପୁସ୍ତକମାନ ମଧ୍ୟ ସେ ଅଧ୍ୟୟନ କରିଥିବା ଏହି ପୁସ୍ତକ ତାଲିକାର ଅନ୍ତର୍ଭୁକ୍ତ ଥିଲା । ବର୍ମାର ଇତିହାସ, ରାଜନୀତି ଓ ଲୋକଙ୍କ ଇତିହାସ ସଂବନ୍ଧରେ ସେ ଗଭୀର ଭାବରେ ଅଧ୍ୟୟନ କରିଥିଲେ । ଉତ୍କଳମଣି ଗୋପବନ୍ଧୁଙ୍କ ନିକଟକୁ ସୁଭାଷଚନ୍ଦ୍ର ସେହି ଜେଲରୁ ଲେଖିଥିବା ପତ୍ରରୁ ଜଣାଯାଏ ଯେ ମାଣ୍ଡାଲେ ଜେଲରେ ରହିଥିବା ବେଳେ ସେ ଓଡ଼ିଆ ଭାଷା ଶିଖିବା ଓ ଓଡିଆ ବହି ପଢିବା ପାଇଁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରିଥିଲେ । ଗୋପବନ୍ଧୁ ତାଙ୍କ ନିକଟକୁ ପଠାଇଥିବା ଓଡିଆ ପୁସ୍ତକ ଗୁଡିକ ପାଇ ସେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ଏହି ଜେଲ ଭିତରୁ ସେ ତାଙ୍କ ପିତା, ମାତା ଭାଇ ଶରତ ବୋଷ, ବାସନ୍ତୀ ଦେବୀ ତଥା ଅନ୍ୟମାନଙ୍କ ନିକଟକୁ ବହୁପତ୍ର ଲେଖିଥିଲେ ।

## ଗୋପବନ୍ଧୁଙ୍କ ନିକଟକୁ ସୁଭାଷ ଚନ୍ଦ୍ରଙ୍କ ପତ୍ର

ସୁଭାଷ ଚନ୍ଦ୍ର ୧୯୨୪ ମସିହାଠାରୁ ୧୯୨୭ ମସିହା ପର୍ଯ୍ୟନ୍ତ ତିନିବର୍ଷକାଳ ବର୍ମା ଦେଶର ମାଣ୍ଡାଲେ ଜେଲ ଭିତରେ ରହିଥିବା ସମୟରେ ତାଙ୍କର ଆତ୍ମୀୟ ତଥା ବିଶିଷ୍ଟ ବ୍ୟକ୍ତିମାନଙ୍କ ନିକଟକୁ ବହୁ ସଂଖ୍ୟକ ପତ୍ର ଲେଖିଥିଲେ ଏବଂ ସବୁ ପତ୍ରର ଉତ୍ତର ଦେଇଥିଲେ । ଏହି ପତ୍ର ଗୁଡିକ ଭିତରୁ [illegible]ଟି ପତ୍ର ସଂଗୃହୀତ ହୋଇଛି । ଏଥିଭିତରୁ ସେ ଉତ୍କଳମଣି ଗୋପବନ୍ଧୁଙ୍କ ନିକଟକୁ ଲେଖିଥିବା ତିନିଖଣ୍ଡ ପତ୍ର ମିଳିଛି । ଗୋପବନ୍ଧୁ ଲେଖିଥିବା ପତ୍ରର ଉତ୍ତରରେ ସୁଭାଷ ଚନ୍ଦ୍ର ଯାହା ଲେଖିଥିଲେ ତାହାହିଁ ମିଳିଛି । ଗୋପବନ୍ଧୁ ତାଙ୍କ ନିକଟକୁ ଯେଉଁ ସବୁ ପତ୍ର ଲେଖିଥିଲେ ସେଗୁଡିକ ମିଳିନାହିଁ । ଗୋପବନ୍ଧୁ ସୁଭାଷ ଚନ୍ଦ୍ରଙ୍କୁ ଲେଖିଥିବା ପତ୍ର ଗୁଡିକରେ ସେତେବେଳେ ଓଡ଼ିଶାର ବନ୍ୟା ପ୍ରପୀଡିତ ଲୋକଙ୍କ ଅବସ୍ଥା, ଫିଲିପ୍-ଡଫ କମିଟିଙ୍କ ସୁପାରିଶ ସତ୍ତ୍ୱେ ମାନ୍ଦ୍ରାଜ ସରକାରଙ୍କ ବିରୋଧ ଯୋଗୁ ଗଞ୍ଜାମ ଜିଲ୍ଲା ଓଡ଼ିଶାରେ ମିଶିପାରୁ ନଥିବାରୁ ସମଗ୍ର ଓଡିଶାବାସୀ ବିଶେଷତଃ ଗଞ୍ଜାମ ଜିଲ୍ଲା ଅଧିବାସୀଙ୍କ ଦୁଃଖ, ଉତ୍କଳ ଗୌରବ ମଧୁସୂଦନଙ୍କ ଉତ୍କଳଟାନେରୀ ଜୋତା କାରଖାନାର ଦୁର୍ଦ୍ଦଶା ତଥା ସେତେବେଳର ରାଜନୈତିକ ପରିସ୍ଥିତିରେ ତାଙ୍କର ହତାଶ ଭାବ ସୁଭାଷ ଚନ୍ଦ୍ରଙ୍କୁ ଜଣାଇଥିଲେ । ସୁଭାଷ ଚନ୍ଦ୍ର ତାଙ୍କୁ ଦେଇଥିବା ଉତ୍ତରରେ ସର୍ବପ୍ରଥମେ ଓଡ଼ିଆଭାଷା ଶିକ୍ଷା କରିବା ଓ ଓଡିଆବହି ପଢିବାପାଇଁ ଆଗ୍ରହ ପ୍ରକାଶ କରି ଓଡିଆ ବହି ତାଙ୍କ ନିକଟକୁ ପଠାଇବା ପାଇଁ ଅନୁରୋଧ କରିଥିଲେ । ଓଡିଆ ଭାଷା ଶିଖିବା ପାଇଁ ବଙ୍ଗଳା -ଓଡିଆ ବା ଇଂରେଜୀ - ଓଡିଆବହି, ଇଂରେଜୀ-ଓଡିଆ ବା ବଙ୍ଗଳା-ଓଡିଆ ଅଭିଧାନ ତଥା ଓଡିଶାର ମହାପୁରୁଷଙ୍କ ଜୀବନୀ ସେ ଚାହିଁଥିଲେ । ଗୋପବନ୍ଧୁ ତ୍ରିଭାଷୀ, ବର୍ଣ୍ଣବୋଧ, ଶିଶୁବୋଧ ଓ ପିଲାଙ୍କ ମହାଭାରତ ପ୍ରଭୃତି ଓଡିଆ ପୁସ୍ତକ ସୁଭାଷ ଚନ୍ଦ୍ରଙ୍କ ନିକଟକୁ ପଠାଇଥିଲେ ମାତ୍ର ଓଡିଆ ପୁସ୍ତକ ଗୁଡିକ ଗୋଇନ୍ଦା ବିଭାଗ ଦ୍ୱାରା ଯାଞ୍ଚ କରାଯାଇ ଜେଲ ଅଫିସରୁ ବହି ଗୁଡିକ ତାଙ୍କୁ ମିଳିବାପାଇଁ ବିଳମ୍ବ ହେଲା ତେଣୁ ସୁଭାଷ ଚନ୍ଦ୍ର ବ୍ୟସ୍ତ ହୋଇ ଗୋପବନ୍ଧୁଙ୍କୁ ତାହା ଜଣାଇଥିଲେ । ଯାହା ହେଉ ବହିଗୁଡିକ ମିଳିଯିବା ପରେ ସେ ଆନନ୍ଦିତ ହୋଇଥିଲେ ।

ଉତ୍କଳମଣି ଗୋପବନ୍ଧୁଙ୍କ ପତ୍ରରେ ଉଲ୍ଲେଖ ଥିବା ଓଡିଶାର ବନ୍ୟା ପ୍ରପୀଡିତ ଲୋକଙ୍କ ପାଇଁ ସେ ଦୁଃଖ ପ୍ରକାଶ କରି ବଙ୍ଗଳାର ବନ୍ୟା ରିଲିଫ୍ ପାଣ୍ଠିରୁ କିଛି ସାହାଯ୍ୟ ଦିଆଯାଇ ପାରିବ ବୋଲି ସେ ତାଙ୍କୁ ଜଣେଇ ଥିଲେ । ଓଡିଶା ସହିତ ଗଞ୍ଜାମ ଜିଲାର ମିଶ୍ରଣରେ ମାନ୍ଦ୍ରାଜ ସରକାର ବାଧା ସୃଷ୍ଟି କରୁଥିବା ଜାଣି ସେ ଦୁଃଖିତ ହୋଇ ସିଲହଟ୍ ଯଦି ବଙ୍ଗଳା ସହିତ ମିଶି ପାରିଲା ଗଞ୍ଜାମ ଜିଲ୍ଲା ଓଡିଶା ସହିତ ମିଶିବାରେ କାହିଁକି ଅସୁବିଧା ହେବ ବୋଲି ସେ ପ୍ରଶ୍ନ କରିଥିଲେ । ଗଞ୍ଜାମ ଜିଲ୍ଲା ନିଶ୍ଚିତ ଭାବରେ ଓଡିଶା ସହିତ ମିଶିବ ବୋଲି ସେ

ଆଶା ପ୍ରକାଶ କରିଥିଲେ । ଉତ୍କଳ ଗୌରବ ମଧୁସୂଦନଙ୍କ ଜୋତା କାରଖାନା ସଂବନ୍ଧରେ ସେ ମତ ପ୍ରକାଶ କରିଥିଲେ ଯେ ମଧୁସୂଦନ ଏହି ଜୋତା କାରଖାନାକୁ ସାଧାରଣ ପରିଚାଳନା ପାଇଁ ରାଜି ହେବେ ବୋଲି ତାଙ୍କର ଆଶା । ତା ହେଲେ ଏହି କାରଖାନାଟି ଯେ ଲାଭ ଜନକ ହେବ ସେତିକି ନୁହେଁ, ଏହା ହେବ ଓଡିଶାବାସୀଙ୍କର ଏକ ଗର୍ବ, ଶେଷରେ ଗୋପବନ୍ଧୁ ଓଡିଶାର ତତ୍କାଳୀନ ରାଜନୈତିକ ପରିସ୍ଥିତି ବର୍ଣ୍ଣନା କରି ଲେଖିଥିଲେ ଯେ ଏହିଭଳି ଅବସ୍ଥାରେ ସେ ସାଧାରଣ ସେବା କାର୍ଯ୍ୟରୁ ଅବସର ଗ୍ରହଣ କରିବାକୁ ଚାହୁଁଛନ୍ତି । ସୁଭାଷ ଚନ୍ଦ୍ର ଏଥିରେ ମର୍ମାହତ ହୋଇ ତାଙ୍କୁ ଲେଖିଥିଲେ ଯେ ଯେଉଁ ଅବସ୍ଥା ଆପଣ ବର୍ଣ୍ଣନା କରିଛନ୍ତି ସେଥିରେ ଆପଣଙ୍କର ମନୋଭାବ ସେହିପରି ହେବା ସ୍ୱାଭାବିକ ମାତ୍ର ମୋର ଆଶା ଯେ ଆପଣଙ୍କର ଦୁଃଖ ନିଶ୍ଚିତ ଭାବରେ ଅପସରି ଯିବ । ଆପଣ ଯେଉଁ ପଥ ଅନୁସରଣ କରିଛନ୍ତି ସେଥିରୁ ଆଉ ଫେରିବାର ବାଟ ନାହିଁ । ସ୍ୱାମୀ ବିବେକାନନ୍ଦଙ୍କର ଏକ ଉକ୍ତିକୁ ଉଦ୍ଧାର କରି ସେ ଲେଖିଥଲେ ଯେ ଯାହାର ହୃଦୟ ଯେତେ ଉଚ୍ଚ ତାର ଦୁଃଖ ସେତେ ଗଭୀର ।

ଉତ୍କଳମଣି ଗୋପବନ୍ଧୁଙ୍କ ମୃତ୍ୟୁର ମାତ୍ର ଦୁଇବର୍ଷ ପୂର୍ବରୁ ସେ ସୁଭାଷଚନ୍ଦ୍ରଙ୍କ ନିକଟକୁ ଏପତ୍ର ଲେଖିଥିଲେ । ସେତେବେଳକୁ ସୁଭାଷ ଚନ୍ଦ୍ରଙ୍କ ରାଜନୈତିକ ଜୀବନର ପ୍ରଥମ ପର୍ଯ୍ୟାୟ ଚାଲିଥିଲା ଏବଂ ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନର ଶେଷ ପର୍ଯ୍ୟାୟ ଚାଲିଥିଲା । ସୁଭାଷ ଚନ୍ଦ୍ର ତାଙ୍କ ରାଜନୈତିକ ଜୀବନ ଆରମ୍ଭ କରିବା ମଧ୍ୟେ ଗୋପବନ୍ଧୁ ତାଙ୍କ ସହିତ ସଂପର୍କ ସ୍ଥାପନ କରିଥିବା ଜଣାଯାଏ । ଗୋପବନ୍ଧୁ ସାକ୍ଷୀଗୋପାଳଠାରେ ଜାତୀୟ ବନବିଦ୍ୟାଳୟ ପ୍ରତିଷ୍ଠା କରିବା ବେଳଠାରୁ ତାଙ୍କର ସୁଭାଷ ଚନ୍ଦ୍ରଙ୍କ ପରିବାର ସହିତ ଘନିଷ୍ଠ ସଂପର୍କ ଥିଲା । ସୁଭାଷ ଚନ୍ଦ୍ରଙ୍କ ପିତା ଜାନକୀନାଥ ବୋଷ ଓଡିଶାର ସାମାଜିକ ସେବାକାର୍ଯ୍ୟ ସହିତ ଯେପରି ସଂପୃକ୍ତ ଥିଲେ ତାହା ପୂର୍ବରୁ ସୂଚନା ଦିଆଯାଇଛି । ଜାନକୀବାବୁ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ଜାତୀୟ ବିଦ୍ୟାଳୟର ପରିଚାଳନା ସହିତ ସଂପୃକ୍ତ ଥିଲେ ।

୧୯୨୫ ମସିହା ଅକ୍ଟୋବର ମାସରେ ଜେଲ ଭିତରେ ଦୁର୍ଗାପୂଜା କରିବା ପାଇଁ ସୁବିଧା ଦେବାକୁ ତଥା ଅର୍ଥ ଯୋଗାଇ ଦେବାପାଇଁ ସେ ଦାବୀ କରିଥିଲେ ମାତ୍ର ଜେଲ କର୍ତ୍ତୃପକ୍ଷ ସେଥିରେ ପ୍ରଥମେ ରାଜି ହୋଇନଥିଲେ ତେଣୁ ସୁଭାଷ ଚନ୍ଦ୍ର ସହବନ୍ଦୀ ମାନଙ୍କ ସହ ୧୫ ଦିନ ଉପବାସ ରହିବାପରେ ଜେଲକର୍ତ୍ତୃପକ୍ଷ ସେମାନଙ୍କ ଦାବୀ ପୂରଣ କଲେ । ୧୯୨୬ ମସିହା ଶେଷଭାଗରେ ବଙ୍ଗଳାର ବ୍ୟବସ୍ଥା ସଭାଗୁଡିକୁ ଭାଙ୍ଗିଦିଆଯାଇ ପୁଣି ନିର୍ବାଚନ ପାଇଁ ବ୍ୟବସ୍ଥା ହେଲା । ସୁଭାଷ ଚନ୍ଦ୍ର ଉତ୍ତର କଲିକତାର ଗୋଟିଏ ନିର୍ବାଚନ ମଣ୍ଡଳୀରୁ ଜେଲରେ ଥାଇ ପ୍ରାର୍ଥୀ ହେଲେ ଏବଂ ନିର୍ବାଚିତ ହେଲେ ମାତ୍ର ଅଟକବନ୍ଦୀ ହୋଇ ରହିଲେ । କାରାଗାର ପ୍ରତିକୂଳ ଅବସ୍ଥା ଓ ପ୍ରତିକୂଳ ଜଳବାୟୁ ଯୋଗୁ ତାଙ୍କ ସ୍ୱାସ୍ଥ୍ୟ ଅବସ୍ଥାର ଦ୍ରୁତ ଅବନତି ଘଟିଲା । ସେଯଦି ଏଠାରୁ ଇଉରୋପ ଚାଲିଯିବାକୁ ରାଜିହେବେ ତାହେଲେ ତାଙ୍କୁ ଖଲାସ କରିଦିଆଯିବ ବୋଲି ସରକାର ସର୍ତ୍ତ ଦେଲେ ମାତ୍ର ସେ ସେହି ସର୍ତ୍ତକୁ ଅଗ୍ରାହ୍ୟ କରିଦେଲେ । ଶେଷରେ ୧୯୨୭ ମଇ ମାସରେ ତାଙ୍କୁ ଖଲାସ କରି ଦିଆଯାଇଥିଲା ।

## ସାଇମନ କମିସନ ବର୍ଜନରେ ନେତୃତ୍ୱ

୧୯୨୭ ମସିହାରେ ସୁଭାଷ ଚନ୍ଦ୍ର ମାଣ୍ଡାଲେ ଜେଲରୁ ମୁକ୍ତି ପାଇବା ପରେ ଦେଶର ରାଜନୈତିକ ପରିସ୍ଥିତି ଅଧ୍ୟୟନ କରିଥିଲେ । ସେ ମାଣ୍ଡାଲେ ଜେଲରେ ରହିଥିବା ବେଳେ ତାଙ୍କର ପ୍ରିୟ ନେତା ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କର ୧୯୨୫ ମସିହାରେ ପରଲୋକ ହୋଇସାରିଥିଲା । ଚିତ୍ତରଞ୍ଜନଙ୍କ ମୃତ୍ୟୁ ସମଗ୍ର ଦେଶ ପକ୍ଷରେ ଏକ ମର୍ମନ୍ତୁଦ ଘଟଣା ଏବଂ ସୁଭାଷ ଚନ୍ଦ୍ରଙ୍କ ପକ୍ଷରେ ଏହା ଥିଲା ଏକ ଅପୂରଣୀୟ କ୍ଷତି । ଏହି ମୃତ୍ୟୁ ସଂବାଦ ଶୁଣି ସେ ଚିତ୍ତରଞ୍ଜନଙ୍କ ସହଧର୍ମିଣୀ ବାସନ୍ତୀ ଦେବୀଙ୍କୁ ପତ୍ର ଲେଖି ତାଙ୍କ ସ୍ୱାମୀଙ୍କ ସ୍ଥାନ ପୂରଣ କରି ନେତୃତ୍ୱ ଦେବାପାଇଁ ନିବେଦନ କରିଥିଲେ । ମହାତ୍ମାଗାନ୍ଧୀ ସେତେବେଳକୁ ସକ୍ରୀୟ ରାଜନୀତିରୁ ବିଦାୟ ନେଇ ଖଦି ପ୍ରସାରରେ ମନୋନିବେଶ କରିଥାନ୍ତି । ସେ ସାବରମତିଠାରେ ମହାତ୍ମାଗାନ୍ଧୀଙ୍କ ସହିତ ସାକ୍ଷାତ କରି

ଦେଶର ସ୍ୱାଧୀନତା ସଂଗ୍ରାମରେ ନେତୃତ୍ୱ ଦେବାପାଇଁ ନିବେଦନ କରିଥିଲେ । ମାତ୍ର ଗାନ୍ଧିଜୀ ସେଥିରେ ସମ୍ମତି ପ୍ରକାଶ କରିନଥିଲେ । ଚିତ୍ତରଞ୍ଜନଙ୍କ ମୃତ୍ୟୁ ପରେ ସ୍ୱରାଜ ଦଳ ଖଣ୍ଡବିଖଣ୍ଡିତ ହୋଇ ଲୋପ ପାଇଯାଇଥିଲା। ସେ ସେତେବେଳେ ବଙ୍ଗ ପ୍ରଦେଶ ବିଧାନ ପରିଷଦର ସଭ୍ୟଥିଲେ ମାତ୍ର ଜାତୀୟ କଂଗ୍ରେସକୁ ପୁନର୍ଗଠିତ କରିବାରେ ସେ ମନୋନିବେଶ କରିଥିଲେ । କଂଗ୍ରେସ ଅନୁଷ୍ଠାନ ଭିତରେ ସେତେବେଳେ ନାନାବାଦ ବିବାଦ ଚାଲିଥିଲା । କମ୍ୟୁନିଷ୍ଟ ଦଳ ପ୍ରଭାବ ବିସ୍ତାର କରି ଚାଲିଥାନ୍ତି ।

ଦେଶର ଏହିପରି ହତୋତ୍ସାହ ଜନକ ପରସ୍ଥିତି ବେଳେ ବ୍ରିଟିଶ ସରକାର କେବଳ ଗୋରା ସଭ୍ୟଙ୍କୁ ନେଇ ଗଠିତ ସାଇମନ କମିସନ ଗଠନ ଘୋଷଣା କଲେ । ଏହି କମିସନ ଭାରତର ରାଜନୈତିକ ପରିସ୍ଥିତି ପର୍ଯ୍ୟାଲୋଚନା କରି ଆବଶ୍ୟକୀୟ ସାମ୍ବିଧାନିକ ସଂସ୍କାର ପାଇଁ ସୁପାରିଶ କରିବେ ବୋଲି ଘୋଷଣା କରାଯାଇଥିଲା । ଏହି ଘୋଷଣା ଫଳରେ ଜାତୀୟ ଆନ୍ଦୋଳନରେ କିଛି ଉତ୍ସାହ ସୃଷ୍ଟି ହୋଇଥିଲା । ବ୍ରିଟିଶ ପାର୍ଲ୍ୟାମେଣ୍ଟ ଭାରତର ଭବିଷ୍ୟତ ଭାଗ୍ୟ ନିଅନ୍ତା ବୋଲି ଭାରତବାସୀ କଦାପି ସ୍ୱୀକାର କରିନଥିଲେ ତେଣୁ ଜାତୀୟ କଂଗ୍ରେସ ଏହି କମିସନଙ୍କୁ ବର୍ଜନ କରିବାପାଇଁ ବିନାଦ୍ୱିଧାରେ ଘୋଷଣା କଲେ । ୧୯୨୭ ମସିହା ଡିସେମ୍ବର ମାସରେ ଅନୁଷ୍ଠିତ ଜାତୀୟ କଂଗ୍ରେସ ଅଧିବେଶନରେ ଏହି ପ୍ରସ୍ତାବ ଗୃହୀତ ହୋଇଥିଲା । ଏହା ସହିତ ସ୍ୱାଧୀନ ଭାରତପାଇଁ ଏକ ସମ୍ବିଧାନ ପ୍ରସ୍ତୁତ କରିଦେବାପାଇଁ ସର୍ବଦଳୀୟ ସମ୍ମିଳନୀ ଡାକିବାପାଇଁ ନିଷ୍ପତ୍ତି କରାଯାଇଥିଲା। ଏହି ସମୟରେ ସୁଭାଷ ଚନ୍ଦ୍ର ଓ ଜବାହର ଲାଲ ଜାତୀୟ କଂଗ୍ରେସର ସାଧାରଣ ସଂପାଦକ ରୂପେ ନିଯୁକ୍ତ ହେଲେ । ସୁଭାଷ ଚନ୍ଦ୍ର ପୂର୍ବରୁ ବଙ୍ଗଳା ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ନିର୍ବାଚିତ ହୋଇ ସାରିଥିଲେ ।

୧୯୨୮ ମସିହା ଫେବୃଆରୀ ମାସରେ ସାଇମନ କମିସନ ଭାରତରେ ପହଞ୍ଚିବାପରେ ଜାତୀୟ କଂଗ୍ରେସର ନିର୍ଦ୍ଦେଶ ମତେ ସମଗ୍ର ଦେଶରେ ହରତାଳ ପାଳିତ ହୋଇଥିଲା । ବଙ୍ଗଳାରେ ସୁଭାଷ ଚନ୍ଦ୍ରଙ୍କ ନେତୃତ୍ୱରେ ହରତାଳ ପାଳନ ଛଡା ବିଦେଶୀ ଜିନିଷ ବର୍ଜନ ଆରମ୍ଭ ହୋଇଥିଲା। ଏହି ସମୟରେ ଗଠିତ ସର୍ବଦଳୀୟ କମିଟି ସ୍ୱାଧୀନ ଭାରତ ପାଇଁ ଏକ ଚିଠା ପ୍ରସ୍ତୁତ କରିଦେବା ନିମନ୍ତେ ପଣ୍ଡିତ ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଏକ କ୍ଷୁଦ୍ର କମିଟି ଗଠନ କରିଥିଲେ । ଏହି କମିଟିରେ ସୁଭାଷ ଚନ୍ଦ୍ର ଓ ପଣ୍ଡିତ ଜବାହର ଲାଲ ନେହେରୁ ଅନ୍ୟମାନଙ୍କ ଭିତରେ ସଭ୍ୟ ଥିଲେ । ସ୍ୱାଧୀନ ଭାରତ ସମ୍ବିଧାନର ମୌଳିକ ଭିତ୍ତି ସଂପର୍କରେ ଭିନ୍ନ ଭିନ୍ନ ମତ ପ୍ରକାଶ ପାଇଥିଲା । ସୁଭାଷ ଚନ୍ଦ୍ର ଓ ଜବାହର ଲାଲ ଔପନିବେଶୀୟ ସ୍ୱାୟତ୍ତ ଶାସନ ଭାରତ ଚାହେଁ ବୋଲି ଯାହା କୁହାଯାଇଥିଲା ସେଥିରେ ଏକମତ ନହୋଇ ସଂପୂର୍ଣ୍ଣ ସ୍ୱାଧୀନତା ସପକ୍ଷରେ ମତ ପ୍ରକାଶ କରିଥିଲେ । ଉଭୟେ ଯୁବନେତା ଭାରତର ସ୍ୱାଧୀନତା ସଂଘ ନାମରେ ଗୋଟିଏ ସଂସ୍ଥା ଗଠନ କରି ସମଗ୍ର ଦେଶରେ ପ୍ରଚାର ଚଳେଇଥିଲେ । ଛାତ୍ରମାନେ ନିଜର ଅନୁଷ୍ଠାନ ଗଠନ କରି ନିଜର ଅଧିକାର ହାସଲ ଓ ରକ୍ଷା ନିମନ୍ତେ ଆନ୍ଦୋଳନ କରିବା ଉଚିତ ବୋଲି ଉଭୟେ ଯୁବନେତା ଅନୁଭବ କରିଥିଲେ । ସେମାନଙ୍କ ଉତ୍ସାହ ଓ ସମର୍ଥନ କ୍ରମେ ବଙ୍ଗଳା ତଥା ଦେଶର ଅନ୍ୟ ସ୍ଥାନରେ ଛାତ୍ରସଂଗଠନ ଗଢି ଉଠିଥିଲା । ସେହିପରି ଯୁବ ସଂଗଠନକୁ ସେ ଉତ୍ସାହ ଦେଇଥିଲେ । କଲିକତାରେ ୧୯୨୮ ମସିହା ଡିସେମ୍ବର ମାସରେ ନିଖିଳ ଭାରତ ଯୁବକଂଗ୍ରେସ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସୁଭାଷ ଚନ୍ଦ୍ର ଥିଲେ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ । ଏହି ସମୟରେ ଶ୍ରମିକ ଆନ୍ଦୋଳନ ମଧ୍ୟ ତେଜି ଉଠିଥିଲା । ତାଙ୍କ ନେତୃତ୍ୱରେ ଟାଟା ଇସ୍ପାତ କାରଖାନାର ଶ୍ରମିକ ମାନେ ଧର୍ମଘଟ ଆରମ୍ଭ କରିଥିଲେ । ସେତେବେଳର ସଭାରେ ଭାଷଣ ପ୍ରସଙ୍ଗରେ ନୂତନ ଭାରତକୁ ଆଧୁନିକ ପଦ୍ଧତି ଓ ଚିନ୍ତାଧାରାରେ ଗଠନ କରିବା ନିମନ୍ତେ ସୁଭାଷଚନ୍ଦ୍ର ଆହ୍ୱାନ ଦେଉଥିଲେ ।

## ସ୍ୱେଚ୍ଛାସେବକଙ୍କ ସେନାଧ୍ୟକ୍ଷ ସୁଭାଷ

୧୯୨୮ ମସିହା କଂଗ୍ରେସ ଅଧିବେଶନ ପଣ୍ଡିତ ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହେଲା। ଏପର୍ଯ୍ୟନ୍ତ ଅନୁଷ୍ଠିତ ସମସ୍ତ କଂଗ୍ରେସ ଅଧିବେଶନ ଅପେକ୍ଷା ଏଠାରେ ଅଧିକ ଲୋକ ଯୋଗ ଦେଇଥିଲେ ଏବଂ ଏଠାରେ ସମସ୍ତ ବ୍ୟବସ୍ଥା ନିପୁଣ ଭାବରେ କରାଯାଇଥିଲା । ଏହି ଅଧିବେଶନରେ ସୁଭାଷ ଚନ୍ଦ୍ର ଯୁବଗୋଷ୍ଠୀ ତଥା ବାମପନ୍ଥୀ ମାନଙ୍କର ମୁଖପାତ୍ର ରୂପେ ପରିଚିତ ହୋଇଥିଲେ । ଏହି କଂଗ୍ରେସ ଅଧିବେଶନରେ କଂଗ୍ରେସ ସ୍ୱେଚ୍ଛାସେବକ ବାହିନୀର ପ୍ରଧାନ ସେନାଧ୍ୟକ୍ଷ ରୂପେ ସୁଭାଷ ଚନ୍ଦ୍ର ଅର୍ଦ୍ଧସାମରିକ ପୋଷାକ ପିନ୍ଧି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଦ୍ୱିତୀୟ ମହାଯୁଦ୍ଧବେଳେ ଦକ୍ଷିଣ ପୂର୍ବ ଏସିଆର ଯୁଦ୍ଧ କ୍ଷେତ୍ରରେ ନେତାଜୀ ସୁଭାଷ ଚନ୍ଦ୍ରଙ୍କର ଯେଉଁ ଆକାର ଓ ପୋଷାକରେ ଉଭାହୋଇଥିଲେ, ୧୯୨୮ ମସିହାରେ ତାଙ୍କର ସେନାଧ୍ୟକ୍ଷ ରୂପଥିଲା ତାର ଏକ ମାନସ ଚିତ୍ର । ଏହି ଅଧିବେଶନରେ ଔପନିବେଶୀୟ ଶାସନ କଂଗ୍ରେସର ଲକ୍ଷ୍ୟ ବୋଲି କଂଗ୍ରେସର ରାଜନୈତିକ ପ୍ରସ୍ତାବରେ ଯାହା କୁହାଯାଇ ଥିଲା, ସେ ସଂପର୍କରେ ବୟୋଜ୍ୟେଷ୍ଠ କଂଗ୍ରେସ ନେତା ତଥା ଯୁବ ଗୋଷ୍ଠୀଙ୍କ ଭିତରେ ମତଭେଦ ଦେଖାଦେଇଥିଲା । ଏହି ପ୍ରସ୍ତାବ ଆଲୋଚନା ବେଳେ ସୁଭାଷ ଚନ୍ଦ୍ର ଏକ ସଂଶୋଧନ ପ୍ରସ୍ତାବ ଆଣି ପୂର୍ଣ୍ଣ ସ୍ୱାଧୀନତା କଂଗ୍ରେସର ଲକ୍ଷ୍ୟ ବୋଲି ଘୋଷଣା କରିଥିଲେ ଏବଂ ଏହାଫଳରେ ଦେଶର ଜନସାଧାରଣ ବିଶେଷ କରି ଯୁବକମାନଙ୍କ ଭିତରେ ନୂତନ ପ୍ରେରଣା ଓ ଉତ୍ସାହ ସୃଷ୍ଟି ହେବ ବୋଲି ମତପ୍ରକାଶ କରିଥିଲେ । ମାତ୍ର ସୁଭାଷ ଚନ୍ଦ୍ରଙ୍କ ସଂଶୋଧନ ପ୍ରସ୍ତାବ ଅଗ୍ରାହ୍ୟ ହୋଇଯାଇଥିଲା । ଏହାପରେ ସେ ମତ ପ୍ରକାଶ କଲେ ଯେ ଅଗ୍ରଗତି ପାଇଁ କଂଗ୍ରେସ ଆହ୍ୱାନ ଦେବ ବୋଲି ଲୋକେ ଆଶା କରିଥିଲେ ମାତ୍ର ଏହି ପ୍ରସ୍ତାବ ଫଳରେ ଲୋକେ ହତୋତ୍ସାହ ହୋଇପଡିବେ । ତେବେ ଏତିକି ଆଶାର କଥାଯେ କଂଗ୍ରେସ ଭିତରେ ବାମପନ୍ଥୀ ମାନଙ୍କର ଶକ୍ତି ବୃଦ୍ଧି ପାଇଛି ।

## ଓଡିଶାର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଦାବୀକୁ ସମର୍ଥନ

ପଣ୍ଡିତ ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଗଠିତ ସର୍ବଦଳୀୟ କମିଟି ସ୍ୱାଧୀନ ଭାରତ ପାଇଁ ଯେଉଁ ସମ୍ବିଧାନ ଚିଠା ପ୍ରସ୍ତୁତ କରିଥିଲେ ସେ ସଂବନ୍ଧୀୟ ପ୍ରସ୍ତାବର ଆଲୋଚନା ବେଳେ ପଣ୍ଡିତ ନୀଳକଣ୍ଠଦାସ ଓ ନୀରଞ୍ଜନ ପଟ୍ଟନାୟକଙ୍କ ଦ୍ୱାରା ସେହି ସଂବିଧାନ ଚିଠା ସମସ୍ତ ଓଡିଆଭାଷୀ ଅଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଅନ୍ତର୍ଭୁକ୍ତ କରିବାପାଇଁ ଯେଉଁ ପ୍ରସ୍ତାବ ଦିଆଯାଇଥିଲା, ସର୍ବଦଳୀୟ କମିଟିର ଅନ୍ୟତମ ସଭ୍ୟ ସୁଭାଷଚନ୍ଦ୍ର ବୋଷ ତାକୁ ସମର୍ଥନ କରିଥିଲେ ।

## ବିପ୍ଳବୀମାନଙ୍କ କାର୍ଯ୍ୟକଳାପରେ ତାଙ୍କର ଭୂମିକା

୧୯୨୯ ମସିହାରେ ବିପ୍ଳବୀମାନଙ୍କ କାର୍ଯ୍ୟକଳାପ ବୃଦ୍ଧି ପାଇବା ଫଳରେ ଲୋକଙ୍କ ଭିତରେ ଉତ୍ସାହ ବୃଦ୍ଧି ପାଇଥିଲା। ଏହି ସମୟରେ ଉତ୍ତର ଭାରତରେ ଏହିଭଳି କାର୍ଯ୍ୟକଳାପ ଉଲ୍ଲେଖ ଯୋଗ୍ୟ ଭାବରେ ବୃଦ୍ଧି ପାଇଲା । ୧୯୨୮ ମସିହାରେ ଜନନାୟକ ଲାଲା ଲାଜପତ ରାୟଙ୍କ ଉପରେ ଆକ୍ରମଣ କରିଥିବା ପୋଲିସ୍ ଅଫିସରଙ୍କୁ ଜଣେ ବିପ୍ଳବୀ ହତ୍ୟା କରିଥିଲେ । ବିପ୍ଳବୀ ଭଗତ୍ ସିଂହ ଓ ବଟୁକେଶ୍ୱର ଦତ୍ତ ଦିଲ୍ଲୀ କେନ୍ଦ୍ର ବ୍ୟବସ୍ଥାସଭା ଗୃହ ଭିତରେ ବୋମା ନିକ୍ଷେପ କରିଥିଲେ । ଏହି ଘଟଣା ପରେ ବ୍ରିଟିଶ ସରକାର ଯେଉଁ ଲାହୋର ଷଡଯନ୍ତ୍ର ମକଦ୍ଦମା କଲେ ତାହା ଦେଶର ଜନସାଧାରଣଙ୍କ ଭିତରେ ବିଶେଷ ଆଲୋଡନ ସୃଷ୍ଟି କରିଥିଲା ଏବଂ ଏହି ମକଦ୍ଦମାରେ ସଂପୃକ୍ତ ବିପ୍ଳବୀମାନଙ୍କ ପ୍ରତି ଜନସାଧାରଣଙ୍କ ସହାନୁଭୂତି ପ୍ରକାଶ ପାଇଥିଲା । ସର୍ଦ୍ଦାର ଭଗତସିଂହ ପଞ୍ଜାବ ଯୁବ ଆନ୍ଦୋଳନର ନେତା ଥିଲେ । ସେ ଯେଉଁ ନବଜଓ୍ୱାନ ଭାରତ ସଭା ସଂଗଠନ ପ୍ରତିଷ୍ଠା କରିଥିଲେ ତା ସହିତ ସୁଭାଷଚନ୍ଦ୍ର ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ । ଲାହୋର ଷଡଯନ୍ତ୍ର ମକଦ୍ଦମାର ଅନ୍ୟତମ ଅଭିଯୁକ୍ତ ଯୁବକ ବଙ୍ଗଳାର ଯତୀନ୍ଦ୍ର ନାଥ ଦାସଙ୍କ ସହିତ ସୁଭାସଚନ୍ଦ୍ରଙ୍କ

ଘନିଷ୍ଠ ପରିଚୟ ଥିଲା ଯତିନ୍ଦ୍ର ନାଥ ଦାସ ଜେଲରେ ଥିଲାବେଳେ ବିପ୍ଳବୀ ରାଜନୈତିକ ବନ୍ଦୀମାନଙ୍କୁ ରାଜନୈତିକ ବନ୍ଦୀ ଭଳି ବ୍ୟବହାର କରିବାପାଇଁ ଦାବୀକରି ଅନଶନ କରିଥିଲେ ମାତ୍ର ସରକାର ତାଙ୍କ ଦାବୀକୁ ଗ୍ରହଣ କଲେ ନାହିଁ ଏବଂ ଜେଲରେ ଆମରଣ ଅନଶନ କରି ତାଙ୍କର ମୃତ୍ୟୁ ହୋଇଥିଲା । ୧୯୨୯ ମସିହା ସେପ୍ଟେମ୍ବର ୧୩ ତାରିଖ ଦିନ ତାଙ୍କର ମୃତ୍ୟୁ ଘଟିଥିଲା । ଯତୀନ୍ଦ୍ର ଦାସଙ୍କ ମୃତ୍ୟୁରେ ସୁଭାଷ ଚନ୍ଦ୍ର ଗଭୀର ଭାବରେ ମର୍ମାହତ ହୋଇଥିଲେ ଓ ଶହୀଦ ଯତୀନ୍ଦ୍ର ଦାସଙ୍କ ଶବଦାହ ପାଇଁ ନିଜେ ସମସ୍ତ ବ୍ୟବସ୍ଥା କରିଥିଲେ । ଏହି ବର୍ଷ ଦେଶର ବିଭିନ୍ନ ସ୍ଥାନରେ ଶ୍ରମିକ ଅଶାନ୍ତି ବ୍ୟାପୀଥିଲା ଏବଂ ୧୯୨୯ ମସିହାରେ ବ୍ରିଟିଶ ସରକାର ତିନିଜଣ ଇଂରେଜୀ ଶ୍ରମିକ ନେତା ସମେତ ଦଳେ ଭାରତୀୟ ଶ୍ରମିକ ନେତାଙ୍କ ନାମରେ ମିରଟ ଷଡଯନ୍ତ୍ର ମକଦ୍ଦମା ଚଳେଇଥିଲେ । ସୁଭାଷଚନ୍ଦ୍ର ଏହି ମକଦ୍ଦମାରେ ସଂପୃକ୍ତ ଶ୍ରମିକ ନେତାଙ୍କ ପକ୍ଷ ସମର୍ଥନ କରି ଲଢିଥିଲେ । ସୁଭାଷଚନ୍ଦ୍ର ସଂପୃକ୍ତ ଥିବା ଜାତୀୟବାଦୀ ସଂବାଦପତ୍ର 'ଫରୱାର୍ଡ' ଇଂରେଜୀ ପତ୍ରିକାକୁ ବ୍ରିଟିଶ ସରକାର ବିରୁଦ୍ଧରେ ଏକ ମାନହାନି ମକଦ୍ଦମାରେ ଜଡିତ କରି ବହୁ ଅର୍ଥ ଜୋରିମନା ଆଦାୟ କରିବାକୁ ଆଦେଶ ଦେବାରୁ ପତ୍ରିକାଟି ବନ୍ଦ କରିଦେବାକୁ ପଡିଥିଲା । ମାତ୍ର ସାଙ୍ଗେ ସାଙ୍ଗେ ଲିବର୍ଟି ନାମରେ ଆଉ ଏକ ସଂବାଦ ପତ୍ର ସେ ପ୍ରକାଶ କରିଥିଲେ ।

୧୯୨୯ ମସିହା ଶେଷଭାଗରେ ମହାତ୍ମାଗାନ୍ଧୀଙ୍କ ନିର୍ଦ୍ଦେଶରେ ବ୍ୟବସ୍ଥାସଭା ମାନଙ୍କରୁ କଂଗ୍ରେସ ସଭ୍ୟମାନଙ୍କୁ ଇସ୍ତଫା ଦେବାପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟିରେ କୁହାଯାଇଥିଲା । ମାତ୍ର କେତେମାସ ଆଗରୁ ପଣ୍ଡିତ ମୋତିଲାଲ ନେହେରୁ ବଙ୍ଗଳାର କଂଗ୍ରେସ ସଭ୍ୟମାନଙ୍କୁ ବ୍ୟବସ୍ଥାସଭା ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବାପାଇଁ ପରାମର୍ଶ ଦେଇଥିଲେ । ଯାହାହେଉ ଯତୀନ୍ଦ୍ର ମୋହନ ସେନଗୁପ୍ତ ଓ ସୁଭାଷଚନ୍ଦ୍ରଙ୍କ ବିରୋଧ ଯୋଗୁ ଏହି ପ୍ରସ୍ତାବ ଗୃହୀତ ନ ହୋଇ ଆସନ୍ତା ଡିସେମ୍ବର (୧୯୨୯)ରେ ଅନୁଷ୍ଠିତ ହେବାକୁ ଥିବା ଲାହୋର କଂଗ୍ରେସ ଅଧିବେଶ ପର୍ଯ୍ୟନ୍ତ ସ୍ଥଗିତ ରଖାଯାଇଥିଲା । ୧୯୨୯ ଅକ୍ଟୋବର ମାସରେ ତତ୍କାଳୀନ ବଡଲାଟ ଲର୍ଡ ଇରଉଇନ ଘୋଷଣା କଲେ ଯେ ଭାରତର ସାଂବିଧାନିକ ଅଗ୍ରଗତିରେ ଭାରତ ଔପନିବେଶିକ ଶାସନ ଲାଭ କରିବ ଏବଂ ସାଇମନ କମିସନ ରିପୋର୍ଟ ପ୍ରକାଶ ପାଇବାପରେ ଲଣ୍ଡନରେ ପ୍ରଥମ ଗୋଲଟେବୁଲ ବୈଠକ ବସିବ । ନଭେମ୍ବର ମାସରେ ସବୁଦଳର ନେତାମାନଙ୍କର ଏକ ବୈଠକ ଅନୁଷ୍ଠିତ ହୋଇ ବହୁ ଅଧିକ ସଂଖ୍ୟକ ସଭ୍ୟଙ୍କ ସମ୍ମତି କ୍ରମେ ବ୍ରିଟିଶ ସରକାରଙ୍କ ଔପନିବେଶିକ ଶାସନ ବିକାଶରେ ସହଯୋଗ କରିବା ପାଇଁ ସମ୍ମତି ଜଣାଇଦେଲେ । ପଣ୍ଡିତ ନେହେରୁଙ୍କ ସମେତ ଅନ୍ୟ ନେତାମାନେ ଏଥିରେ ସ୍ୱାକ୍ଷର କରିଥିଲେ । ମାତ୍ର ସୁଭାଷ ଚନ୍ଦ୍ର ବୋଷ, ସଇଫୁଦିନ୍ କିଚଲୁ ଓ ଅବଦୁଲ ପ୍ରମୁଖ ଏହାର ବିରୋଧ କରି ଏକ ସ୍ୱତନ୍ତ୍ର ଇସ୍ତାହାରରେ ଔପନିବେଶୀୟ ଶାସନର ବିରୋଧ କରିଥିଲେ ଓ ଗୋଲଟେବୁଲ ବୈଠକରେ ଯୋଗ ନଦେବା ପାଇଁ ମତପ୍ରକାଶ କରିଥିଲେ । ସେମାନଙ୍କ ମତରେ ପ୍ରକୃତ ଗୋଲଟେବୁଲ ବୈଠକକୁ ଭାରତର ଜନସାଧାରଣଙ୍କ ପ୍ରତିନିଧି ନିର୍ବାଚନ କରିବେ । ସେମାନେ କହିଥିଲେ ଯେ ବ୍ରିଟିଶ ଶାସନର ଏହା ଏକ ଫାନ୍ଦ । ଶେଷରେ ମହାତ୍ମାଗାନ୍ଧୀ ଓ ପଣ୍ଡିତ ମୋତିଲାଲ ନେହେରୁ ବ୍ରିଟିଶ ବଡଲାଟଙ୍କୁ ସାକ୍ଷାତ କରି ଭାରତକୁ ଔପନିବେଶୀୟ ଶାସନ ମିଳିବ ବୋଲି ତାଙ୍କଠାରୁ ପ୍ରତିଶ୍ରୁତି ଚାହିଁଥିଲେ । ମାତ୍ର ତାହେଲା ନାହିଁ ସେମାନେ ଶୂନ୍ୟ ହସ୍ତରେ ଲାହୋର କଂଗ୍ରେସରୁ ଫେରିଲେ ।

## କଂଗ୍ରେସର ପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ଘୋଷଣା

ପଣ୍ଡିତ ଜବାହରଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଐତିହାସିକ ଲାହୋର କଂଗ୍ରେସ ଅଧିବେଶନ ୧୯୨୯ ମସିହା ଡିସେମ୍ବର ଶେଷଭାଗରେ ଅନୁଷ୍ଠିତ ହେଲା । ଏହି ଅଧିବେଶନରେ ନିଜେ ମହାତ୍ମାଗାନ୍ଧୀ ସଂପୂର୍ଣ୍ଣ ସ୍ୱାଧୀନତା ଲକ୍ଷ୍ୟ ପ୍ରସ୍ତାବ ଆଗତ କଲେ । ୧୯୨୯ ଡିସେମ୍ବର ୩୧

ତାରିଖ ମଧ୍ୟ ରାତ୍ରୀରେ କଂଗ୍ରେସର ଯୁବ ସଭାପତି ପଣ୍ଡିତ ଜବାହର ଲାଲ ନେହେରୁ ବିରାଟ ଜନତାଙ୍କ ସମ୍ମୁଖରେ ଜାତୀୟ ପତାକା ଉତ୍ତୋଳନ କଲେ । ଅଗଣିତ ଲୋକଙ୍କ ଭିତରେ ପ୍ରବଳ ଉତ୍ସାହ ଉନ୍ମାଦନା ପ୍ରକାଶ ପାଇଥିଲା, ସୁଭାଷ ଚନ୍ଦ୍ର ଆହୁରି ପାଦେ ଆଗକୁ ଯାଇ ଏକ ପ୍ରସ୍ତାବରେ କଂଗ୍ରେସ ଦେଶରେ ଏକ ସମାନ୍ତରାଳ ସରକାର ଗଠନ ପାଇଁ ମତ ପ୍ରକାଶ କରି ଦେଶର ଶ୍ରମିକ କୃଷକ ଓ ଯୁବ ସମ୍ପ୍ରଦାୟକୁ ଏହା ସହିତ ସାମିଲ କରିବାପାଇଁ ପରାମର୍ଶ ଦେଇଥିଲେ । ତାଙ୍କ ମତରେ କଂଗ୍ରେସ ସଭ୍ୟଙ୍କୁ ବ୍ୟବସ୍ଥାପକ ସଭାରୁ ଇସ୍ତଫା ଦେବାକୁ ନିର୍ଦ୍ଦେଶ ଦେଲେ ଯଥେଷ୍ଟ ହେବ ନାହିଁ । ବ୍ରିଟିଶ ଶାସନଠାରୁ ସମସ୍ତ ସଂପର୍କ ତୁଟାଇବାକୁ ହେବ ସବୁ ବର୍ଜନ କରିବାକୁ ହେବ, କୃଷକ, ଶ୍ରମିକ ଓ ଦଳିତ ଜାତିଙ୍କୁ ସଂଗଠିତ ନ କଲେ ଆଇନ ଅମାନ୍ୟ କଦାପି ସଫଳ ହେବନାହିଁ ବୋଲି ସେ ବିଶ୍ୱାସ କରିଥିଲେ । ସେହି ସମୟରେ ବଙ୍ଗଳାର ପ୍ରାଦେଶିକ କଂଗ୍ରେସ କମିଟିରେ ଗାନ୍ଧିଜୀଙ୍କ ଔପନିବେଶୀୟ ଶାସନ ପ୍ରସ୍ତାବକୁ ସୁଭାଷଚନ୍ଦ୍ର ବିରୋଧ କରୁଥିବା ବେଳେ, ଯତୀନ୍ଦ୍ର ମୋହନ ସେନଗୁପ୍ତ ଏହାକୁ ପୂର୍ଣ୍ଣ ସମର୍ଥନ କରିଥିଲେ । ଏଥିପାଇଁ ପ୍ରାଦେଶିକ କଂଗ୍ରେସ କମିଟିରେ ଯେଉଁ ମତଭେଦ ଦେଖାଦେଇଥିଲା ସେଥିରେ ସୁଭାଷ ଚନ୍ଦ୍ରଙ୍କ ଗୋଷ୍ଠୀଙ୍କୁ ଅଧିକ ସଭ୍ୟଙ୍କ ସମର୍ଥନ ମିଳିଥିଲା । ତାଙ୍କର ସମଗ୍ର ରାଜନୈତିକ କାର୍ଯ୍ୟକାଳ ଭିତରେ ବଙ୍ଗଳାର ଯୁବ ସମ୍ପ୍ରଦାୟ ସୁଭାଷ ଚନ୍ଦ୍ରଙ୍କୁ ସବୁବେଳେ ଏହିପରି ସମର୍ଥନ କରି ଆସିଥିଲେ ।

## ଜେଲ ଭିତରେ ଥାଇ କଲିକତା କର୍ପୋରେସନର ମେୟର

ଲାହୋର କଂଗ୍ରେସ ଅଧିବେଶନରେ ବିପ୍ଳବୀ ସୁଭାଷ କଂଗ୍ରେସ ପାଇଁ ଯେଉଁ ନୂତନ କାର୍ଯ୍ୟକ୍ରମର ପ୍ରସ୍ତାବ ଦେଇଥିଲେ ତାକୁ କାର୍ଯ୍ୟକାରୀ କରିବା ପାଇଁ କଂଗ୍ରେସ ଗଣତାନ୍ତ୍ରିକ ଦଳ ବୋଲି ଗୋଟିଏ ନୂତନ ଦଳ ଗଠନ କଲେ । ମାତ୍ର ସେ ଲାହୋର କଂଗ୍ରେସ ପରେ କଲିକତାରେ ଆସି ପହଞ୍ଚିବା ପରେ ତାଙ୍କୁ ଗିରଫ କରିନିଆଯାଇଥିଲା । ଏହାପରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଯେଉଁ ଐତିହାସିକ ଲବଣ ସତ୍ୟାଗ୍ରହ ଚାଲିଲା ସୁଭାଷ ଚନ୍ଦ୍ର କାରାଗାର ଭିତରେ ରହି ତାହା ଲକ୍ଷ୍ୟ କରିଥିଲେ । ଗାନ୍ଧିଜୀ ବଡଲାଟଙ୍କୁ ପତ୍ର ଲେଖି ଜଣାଇବା ପରେ ୧୯୩୦ ମସିହା ଏପ୍ରିଲ ୬ତାରିଖରେ ଦାଣ୍ଡିଠାରେ ଲବଣ ଆଇନ ଭଙ୍ଗକରି ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଏହି ସତ୍ୟାଗ୍ରହ ଫଳରେ ସମଗ୍ର ଦେଶରେ ଅପୂର୍ବ ଜାଗରଣ ଓ ପ୍ରବଳ ଉତ୍ସାହ ସୃଷ୍ଟି ହୋଇଥିଲା। ଏହି ଐତିହାସିକ ଘଟଣା ସଂପର୍କରେ ସୁଭାଷ ଚନ୍ଦ୍ର ତାଙ୍କ ଆତ୍ମଜୀବନୀ ଇଣ୍ଡିଆନଷ୍ଟ୍ରଗଲ ପୁସ୍ତକରେ ଲେଖିଛନ୍ତି - "ଗାନ୍ଧିଜୀ ଯେଉଁ ପରବର୍ତ୍ତୀ ପଦକ୍ଷେପ ଗ୍ରହଣ କଲେ ତାହା ତାଙ୍କ ନେତୃତ୍ୱର ଏକ ଅପୂର୍ବ ସଫଳତା ଭାବରେ ଅବିସ୍ମରଣୀୟ ହୋଇ ରହବ ଏବଂ ଦେଶର ସଙ୍କଟ ବେଳେ ତାଙ୍କ ନେତୃତ୍ୱ କିପରି ଶୀର୍ଷସ୍ଥାନ ଆରୋହଣ କରିପାରେ ତାହା ପ୍ରମାଣିତ ହେଲା ।" ଗାନ୍ଧିଜୀ ଦାଣ୍ଡିଠାରେ ଲବଣ ଆଇନ ଭଙ୍ଗ କରି ଲୁଣ ମାରିବା ସଙ୍ଗେ ସଙ୍ଗେ ଭାରତର ସମୁଦ୍ର ଉପକୂଳବର୍ତ୍ତୀ ସ୍ଥାନମାନଙ୍କରେ ସ୍ୱାଧୀନତା ସଂଗ୍ରାମୀମାନେ ଲବଣ ଆଇନ ଭଙ୍ଗକଲେ ଓ ଏହି ଲବଣ ସତ୍ୟାଗ୍ରହରେ ଅଗଣିତ ସ୍ତ୍ରୀପୁରୁଷ ଅଂଶ ଗ୍ରହଣ କରିଥିଲେ । ଏହି ସମୟରେ ଓଡିଶାର ସ୍ୱାଧୀନତା ସଂଗ୍ରାମୀମାନଙ୍କ ନେତୃତ୍ୱରେ ବାଲେଶ୍ୱର ଉପକୂଳସ୍ଥ ଇଞ୍ଚୁଡିଠାରେ ଯେଉଁ ଲବଣ ସତ୍ୟାଗ୍ରହ ହୋଇଥିଲା ତାହା ସମଗ୍ର ଦେଶରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ଲବଣ ସତ୍ୟାଗ୍ରହ ପରେ ପରେ ବିଲାତି ଲୁଗା ଓ ବିଦେଶୀ ଜିନିଷ ବର୍ଜନ, ମଦ ଓ ନିଶା ଦ୍ରବ୍ୟ ଦୋକାନ ଆଗରେ ପିକେଟିଙ୍ଗ ଆଦି ଆଇନ ଅମାନ୍ୟ ଆନ୍ଦୋଳନ ମଧ୍ୟ ଚାଲିଥିଲା ।

ମହାତ୍ମାଗାନ୍ଧୀ ୧୯୩୦ ମଇ ୫ ତାରିଖରେ ଗିରଫ ହେଲେ । ସୁଭାଷଚନ୍ଦ୍ର କାରାଗାର ଭିତରେ ଏହି ଐତିହାସିକ ଆନ୍ଦୋଳନର ଅଗ୍ରଗତିକୁ ଲକ୍ଷ୍ୟ କରୁଥିଲେ । ଏହି ସମୟରେ ୧୯୩୦ ମସିହା ଜୁନ ମାସରେ ସାଇମନ କମିସନଙ୍କ ରିପୋର୍ଟ ପ୍ରକାଶ ପାଇଲା । ଏହା ଏପରି ଅସନ୍ତୋଷ ଜନକ ଥିଲା ଯେ ସବୁଦଳ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ଏହି ସମୟରେ ଅନୁଷ୍ଠିତ

କଲିକତା କର୍ପୋରେସନ ନିର୍ବାଚନରେ ଜେଲ ଭିତରେ ଥାଇ ସୁଭାଷଚନ୍ଦ୍ର କଲିକତା କର୍ପୋରେସନର ମେୟର ନିର୍ବାଚିତ ହୋଇଥିଲେ । ବର୍ଷକ ପରେ ସେ ଖଲାସ ହୋଇ ମେୟର ଦାୟିତ୍ୱ ଗ୍ରହଣ କଲେ ମାତ୍ର ଅଧିକ ଦିନ ସେ ବାହାରେ ରହି ପାରିନଥିଲେ । ୧୯୩୧ ଜାନୁଆରୀ ୨୬ ତାରିଖରେ ଦ୍ୱିତୀୟ ସ୍ୱାଧୀନତା ଦିବସ ପାଳନ ଉପଲକ୍ଷେ ସୁଭାଷଚନ୍ଦ୍ର କେତେକ ଅଫିସ ଓ ବହୁ ସଂଗ୍ରାମୀଙ୍କ ସହିତ କର୍ପୋରେସନ ଅଫିସଠାରୁ ମଇଦାନକୁ ନିଷେଧାଜ୍ଞା ଭଙ୍ଗ କରି ଶୋଭା ଯାତ୍ରାରେ ଯାଉଥିବା ସମୟରେ ବାଟରେ ସେ ଗିରଫ ହୋଇଥିଲେ ଓ ଲାଠିମାଡରେ ଆହତ ହୋଇଥିଲେ ।

## ଭାରତ ଏକ ସମାଜବାଦୀ ରାଷ୍ଟ୍ରରେ ପରିଣତ ହେବ

୧୯୩୦ ମସିହା ଶେଷଭାଗରେ ଲଣ୍ଡନଠାରେ ଯେଉଁ ପ୍ରଥମ ଗୋଲଟେବୁଲ ବୈଠକ ଅନୁଷ୍ଠିତ ହେଲା, ସେଥିରେ କଂଗ୍ରେସ ଯୋଗ ଦେଇନଥିଲା । ଏହି ବୈଠକରେ ବ୍ରିଟିଶ ସରକାର ଦୁଇଟି ବିଷ ଲଡୁ ତିଆରି କରିଦେଲେ ତାହା ହେଲା ଦେଶର ସଂଖ୍ୟାନ୍ୟୂନମାନଙ୍କ ପାଇଁ ସ୍ୱତନ୍ତ୍ର ରକ୍ଷା କବଚ ଓ ଅନ୍ୟଟି ହେଲା ଭାରତରେ ରାଷ୍ଟ୍ରସଂଘ ଗଠନ, ମାତ୍ର ସମସ୍ତ ରକ୍ଷା କବଚ ସତ୍ତ୍ୱେ ଦେଶରେ ଦାୟିତ୍ୱପୂର୍ଣ୍ଣ ଶାସନ ପ୍ରତିଷ୍ଠିତ ହେବକି ନାହିଁ ଏହି ବୈଠକ ଶେଷରେ ସ୍ପଷ୍ଟ ଜଣା ପଡିଲା ନାହିଁ । ଗୋଟିଏ କଥା ସ୍ପଷ୍ଟ ହେଲା ଯେ କଂଗ୍ରେସ ଯୋଗ ନଦେଲେ ବ୍ରିଟିଶ ସରକାର ଓ ଭାରତ ଭିତରେ କୌଣସି ସମସ୍ୟାର ସମାଧାନ ହୋଇ ପାରିବ ନାହିଁ । ଇତିମଧ୍ୟରେ ତତ୍‌କାଳୀନ ବଡଲାଟ ଲର୍ଡ ଇରଉଇନ କଂଗ୍ରେସର ସହଯୋଗ ପାଇଁ ନିବେଦନ କଲେ ଏବଂ ମହାତ୍ମାଗାନ୍ଧୀଙ୍କ ସହିତ ଦୀର୍ଘକାଳ ଆଲୋଚନା କରିବାପରେ ଗାନ୍ଧୀ ଇରଉଇନ୍ ଚୁକ୍ତି ସଂପାଦିତ ହେଲା । କଂଗ୍ରେସ କାର୍ଯ୍ୟକାରୀ କମିଟି ଏହି ଚୁକ୍ତିକୁ ସମର୍ଥନ କଲା । ସୁଭାଷ ଚନ୍ଦ୍ର ସେତେବେଳେ ଜେଲ ଭିତରେ ଥିଲେ । ସେ ମତ ପ୍ରକାଶ କଲେ ଯେ ଏହି ଚୁକ୍ତିରେ ସେ ହତାଶ ହୋଇଛନ୍ତି । ବଙ୍ଗଳା ଏହି ଚୁକ୍ତିର ଘୋର ବିରୋଧ କରିଥିଲା । ସୁଭାଷ ଚନ୍ଦ୍ର ଅନ୍ୟ ରାଜନୈତିକ ବନ୍ଦୀଙ୍କ ସହିତ ୧୯୩୦ ମାର୍ଚ୍ଚ ମାସରେ ଜେଲରୁ ଖଲାସ ହେଲେ । ଖଲାସ ହେବା ପରେ ସେ ବମ୍ବେ ଯାଇ ମହାତ୍ମାଗାନ୍ଧୀଙ୍କ ସହିତ ଦୀର୍ଘ ଆଲୋଚନା କରିଥିଲେ ଓ ଗାନ୍ଧିଜୀଙ୍କ ସହିତ ସେ ଟ୍ରେନରେ ବମ୍ବେଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ଯାଇଥିଲେ । ଗାନ୍ଧିଜୀ ତାଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯେଉଁ ସବୁ ପ୍ରସ୍ତାବ ଉପସ୍ଥାପିତ କରିବା ପାଇଁ କଂଗ୍ରେସ କାର୍ଯ୍ୟକାରୀ କମିଟି ନିର୍ଦ୍ଦେଶ ଦେଇଛି ସେଥିରେ ସ୍ୱାଧୀନତା ସହିତ ଖାପ ଖାଉନଥିବା କୌଣସି ବିଷୟ ରହିବ ନାହିଁ ଏବଂ ସେ ସମସ୍ତ ରାଜନୈତିକ ବନ୍ଧୁଙ୍କୁ ଖଲାସ କରିବା ପାଇଁ ଉଦ୍ୟମ କରିବେ । ସେ ଦିଲ୍ଲୀରେ ପହଞ୍ଚିବାପରେ ସୁଭାଷ ଚନ୍ଦ୍ର ଶୁଣିଲେ ଯେ ବ୍ରିଟିଶ ସରକାର ଭଗତସିଂହ, ଶୁକଦେବ ଓ ରାଜଗୁରୁଙ୍କୁ ଫାଶୀ ଦେବାପାଇଁ ନିଷ୍ପତ୍ତି କରିଛନ୍ତି ।

ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ କରାଚି କଂଗ୍ରେସ ଅଧିବେଶନରେ ସୁଭାଷ ଚନ୍ଦ୍ର ଅନ୍ୟ ବାମପନ୍ଥୀଙ୍କ ସହିତ ଘୋଷଣା କଲେ ଯେ ସେମାନେ ଗାନ୍ଧୀ-ଇରଉଇନ ଚୁକ୍ତିକୁ ସମର୍ଥନ କରୁନଥିଲେ ମଧ୍ୟ ସେହି ବିଷୟଟି ପାଇଁ ସେମାନେ କଂଗ୍ରେସକୁ ଭାଗ ଭାଗ କରିଦେବାକୁ ଚାହାନ୍ତି ନାହିଁ । ଗାନ୍ଧିଜୀ ସୁଭାଷ ଚନ୍ଦ୍ରଙ୍କ ସଙ୍ଗେ ବମ୍ବେ ଠାରେ କଥାବାର୍ତ୍ତା ବେଳେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ଦ୍ୱିତୀୟ ଗୋଲ ଟେବୁଲ ବୈଠକରେ କଂଗ୍ରେସ ପ୍ରତିନିଧିମାନଙ୍କୁ ତଦନୁରୂପ ନିର୍ଦ୍ଦେଶ ଦିଆଯାଇଥିଲା । କରାଚି କଂଗ୍ରେସ ସହିତ ଯେଉଁ ନବଜଓ୍ୱାନ ଭାରତ ସଭା ଅନୁଷ୍ଠିତ ହେଲା ସେଥିରେ ଉଦ୍‌ବୋଧନ ଦେଇ ସୁଭାଷ ଚନ୍ଦ୍ର ଭବିଷ୍ୟତ ସ୍ୱାଧୀନ ଭାରତର ରୂପରେଖ ସମ୍ବନ୍ଧରେ ତାଙ୍କର ସ୍ପଷ୍ଟ ମତାମତ ଘୋଷଣା କରିଥିଲେ ସେ ସ୍ପଷ୍ଟ ଭାବରେଘୋଷଣା କରିଥିଲେ ଯେ ମୁଁ ଭାରତରେ ଏକ ସମାଜବାଦୀ ରାଷ୍ଟ୍ର ପ୍ରତିଷ୍ଠା ଚାହେଁ, ସ୍ୱାଧୀନ ଭାରତରେ ଅର୍ଥନୈତିକ ଓ ରାଜନୈତିକ ଅବସ୍ଥା ଦେଶରେ ମନୁଷ୍ୟତ୍ୱ ଓ ଚରିତ୍ର

ଗଠନରେ ସାହାଯ୍ୟ କରିବା ଦରକାର । ଆମ ସାମୂହିକ ଜୀବନର ଭିତ୍ତି ହେବ - ନ୍ୟାୟ ବିଚାର ଐକ୍ୟ, ସ୍ୱାଧୀନତା, ଶୃଙ୍ଖଳା ଓ ଶ୍ରଦ୍ଧା ସାମ୍ୟ ଓ ଐକ୍ୟ ପ୍ରତିଷ୍ଠା ପାଇଁ ଆମକୁ ସମସ୍ତ ପ୍ରକାର ଦାସତ୍ୱରୁ ମୁକ୍ତ ହେବାକୁ ପଡିବ । କଂଗ୍ରେସ ନୀତି ଓ କାର୍ଯ୍ୟକ୍ରମରେ ବହୁ ଅସ୍ପଷ୍ଟତା ରହିଛି ବୋଲି ସେ ଅନୁଭବ କରିଥିଲେ । ସେ ପ୍ରସ୍ତାବ ଦେଇଥିଲେ ଯେ ଭାରତର ସ୍ୱାଧୀନତା ହାସଲ ପାଇଁ ସମାଜବାଦୀ କାର୍ଯ୍ୟକ୍ରମ ଭିତ୍ତିରେ ଶ୍ରମିକ ଓ କୃଷକମାନଙ୍କୁ ସଂଗଠିତ କରିବାକୁ ହେବ, ଯୁବକମାନଙ୍କୁ ଘେନି ଶୃଙ୍ଖଳିତ ଭାବରେ ସ୍ୱେଚ୍ଛାସେବକ ବାହିନୀ ଗଠନ କରିବାକୁ ହେବ । ଜାତିଭେଦ ପ୍ରଥା ତଥା ସମସ୍ତ ପ୍ରକାର ସାମାଜିକ ଓ ଧର୍ମ ଭିତ୍ତିକ ଅନ୍ଧବିଶ୍ୱାସ ଓ କୁସଂସ୍କାର ଲୋପ କରିବାକୁ ହେବ, ନୂତନ କାର୍ଯ୍ୟକ୍ରମ ଭିତରେ ମହିଳାମାନଙ୍କୁ ସଂଗଠିତ କରିବାକୁ ହେବ, ବ୍ରିଟିଶ ଜିନିଷ ବର୍ଜନ କାର୍ଯ୍ୟକ୍ରମକୁ ଅଧିକ ତୀବ୍ରତର କରିବାକୁ ହେବ ଏବଂ ନୂତନ ଆଦର୍ଶ ଓ କାର୍ଯ୍ୟକ୍ରମକୁ ପ୍ରଚାର କରିବା ପାଇଁ ନୂତନ ସାହିତ୍ୟ ସୃଷ୍ଟି କରିବାକୁ ହେବ ।

ସୁଭାଷ ଚନ୍ଦ୍ର ଗାନ୍ଧୀ-ଇରଉଇନ ଚୁକ୍ତିର ବିରୋଧ କରିଥିଲେ ଏବଂ ଏହା ସନ୍ତୋଷଜନକ ନୁହେଁ ବୋଲି ମତ ପ୍ରକାଶ କରିଥିଲେ ମଧ୍ୟ ଯେଉଁ ମାନେ ଏହି ଚୁକ୍ତି ସଂପାଦନା କରିଥିଲେ, ସେମାନଙ୍କର ଦେଶପ୍ରେମ ପ୍ରତି ତାଙ୍କର ତିଳେମାତ୍ର ସନ୍ଦେହ ନଥିଲା ବୋଲି ସେ ସ୍ପଷ୍ଟ କରିଦେଇଥିଲେ । ତେଣୁ କଂଗ୍ରେସ ଅନୁଷ୍ଠାନ ସହିତ ସଂଘର୍ଷ ଉପୁଜିବା ଭଳି କୌଣସି କାର୍ଯ୍ୟ ନ କରି ଦେଶକୁ ଶକ୍ତିଶାଳୀ କରିବା ପାଇଁ ସେ ଦେଶର ଯୁବକମାନଙ୍କୁ ଆହ୍ୱାନ କରିଥିଲେ । ଅନ୍ୟକୁ ସମାଲୋଚନା କଲାବେଳେ ଯୁବକମାନଙ୍କୁ ସଂଯତ ହେବାକୁ ପଡିବ, ତଦ୍ୱାରା ସେମାନେ କିଛି ହରାଇବେ ନାହିଁ ବରଂ ଅନ୍ୟମାନଙ୍କର ଶ୍ରଦ୍ଧା ଭାଜନ ହେବେ । ଯୁବକ ମାନଙ୍କୁ ସମ୍ବୋଧନ କରି ସେ ଶେଷରେ କହିଥିଲେ ଯେ ବିଶ୍ୱସୌଧ ନିର୍ମାଣ ପାଇଁ ଭାରତ ହେଉଛି ମୂଳଭିତ୍ତିପ୍ରସ୍ତର । ସ୍ୱାଧୀନ ଭାରତ ସମଗ୍ର ପୃଥିବୀରେ ସାମ୍ରାଜ୍ୟବାଦର ଧ୍ୱଂସ ସାଧନ କରିବ ।

ଗାନ୍ଧୀ - ଇରଉଇନ ଚୁକ୍ତିକୁ ସୁଭାଷଚନ୍ଦ୍ର ସମାଲୋଚନା କରିଥିଲେ ମଧ୍ୟ ଗାନ୍ଧିଜୀଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ତିଳେ ହେଲେ ହ୍ରାସ ପାଇ ନଥିଲା । ସେ ଗାନ୍ଧିଜୀଙ୍କ ସହିତ ବମ୍ବେଠାରୁ ଦିଲ୍ଲୀଯାତ୍ରା କରିବା ପଥରେ ଭାରତର ଜନସାଧାରଣ ଗାନ୍ଧିଜୀଙ୍କ ପ୍ରତି ଯେପରି ଗଭୀର ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିଥିଲେ ତାହା ଲକ୍ଷ୍ୟ କରି ସେ ଅଭିଭୂତ ହୋଇଯାଇଥିଲେ । ଦେଶର ଜନସାଧାରଣଙ୍କ ଭିତରେ ଗାନ୍ଧିଜୀଙ୍କ ପ୍ରଭାବ ଅତୁଳନୀୟ ବୋଲି ସେ ଅନୁଭବ କରିଥିଲେ । ଭାରତରେ ଏପରି ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ଆଉ କିଏ ହୋଇପାରିବ ବୋଲି ତାଙ୍କର ବିଶ୍ୱାସ ନଥିଲା, କରାଚି କଂଗ୍ରେସ ପରେ ଗଠିତ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ସୁଭାଷ ଚନ୍ଦ୍ରଙ୍କୁ ମନୋନୀତ କରାଯାଇ ନଥିଲା ।

## ଦ୍ୱିତୀୟ ଗୋଲଟେବୁଲ ବୈଠକ ଓ ଗାନ୍ଧିଜୀ

୧୯୩୧ ଏପ୍ରିଲ ମାସରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗ ଦେବା ପାଇଁ ମହାତ୍ମାଗାନ୍ଧୀଙ୍କୁ କଂଗ୍ରେସ ଏକମାତ୍ର ପ୍ରତିନିଧି ରୂପେ ମନୋନୀତ କଲେ । ସୁଭାଷ ଚନ୍ଦ୍ରଙ୍କ ମତରେ ଏହା ଥିଲା ଏକ ଭ୍ରମାତ୍ମକ ନିଷ୍ପତ୍ତି । ଏହି ବୈଠକରେ ବ୍ରିଟିଶ ସରକାର ତାଙ୍କ ମନୋନୀତ ସାମ୍ପ୍ରଦାୟିକ ନେତା ଓ ସଂଖ୍ୟାନ୍ୟୂନ ପ୍ରତିନିଧିମାନଙ୍କୁ ଏକାଠି କରୁଥିବାରୁ ସେଠାରେ ଗାନ୍ଧିଜୀ ଏକୁଟିଆ ପଡିଯିବେ, ସେତେବେଳେ ଗାନ୍ଧିଜୀ ଘୋଷଣା କଲେ ଯେ ଗୋଲଟେବୁଲ ବୈଠକରେ ତାଙ୍କର ଯୋଗଦାନ ହିନ୍ଦୁ-ମୁସଲମାନ ଏକତା ପ୍ରତିଷ୍ଠା ଦିଗରେ ତାଙ୍କର ଦକ୍ଷତା ଉପରେ ନିର୍ଭର କରିବ । ଏହି ସମୟରେ ତାଙ୍କ ଏହି ଘୋଷଣାର ସୁବିଧା ନେଇ ଜିନ୍ନା ଏକ ପନ୍ଦର ଦଫା କାର୍ଯ୍ୟକ୍ରମ ଗାନ୍ଧିଜୀଙ୍କ ନିକଟରେ ଉପସ୍ଥାପିତ କଲେ । ଏହି ସଂପର୍କରେ ସୁଭାଷଚନ୍ଦ୍ର ଗାନ୍ଧିଜୀଙ୍କୁ କହିଥିଲେ ଯେ ଜାତୀୟବାଦୀ ହିନ୍ଦୁ ଓ ଜାତୀୟବାଦୀ ମୁସଲମାନମାନଙ୍କ ଭିତରେ ଏକ ଆପୋଷ ମିଳାମିଶା ଚୁକ୍ତି ସଂପାଦନ କରିବା ପାଇଁ କଂଗ୍ରେସ ଅନୁଷ୍ଠାନ ଉଦ୍ୟମ କରିବା ଆବଶ୍ୟକ ଏବଂ ଏହା ଜାତୀୟ ନିଷ୍ପତ୍ତି ବୋଲି

ବ୍ରିଟିଶ ସରକାରଙ୍କ ନିକଟରେ ଉପସ୍ଥାପନ କରାଯିବା ଉଚିତ । ଜାତୀୟବାଦର ବିରୋଧୀମାନେ ସେମାନଙ୍କର ଯେଉଁ ଦାବୀ ଉପସ୍ଥାପିତ କରିବାର କରାନ୍ତୁ ପଛେ କଂଗ୍ରେସ ଏହା କରିବା ବିଜ୍ଞତାର କାର୍ଯ୍ୟ ହେବ । ଗାନ୍ଧିଜୀ ସେତେବେଳେ ସୁଭାଷ ଚନ୍ଦ୍ରଙ୍କୁ ନିର୍ଦ୍ଦିଷ୍ଟ ଭାବରେ ପଚାରିଥିଲେ ଯେ ପୃଥକ ନିର୍ବାଚନ ପାଇଁ ତାଙ୍କର କିଛି ଆପତ୍ତି ଅଛିକି ? ସୁଭାଷ ଚନ୍ଦ୍ର ଉତ୍ତର ଦେଇଥିଲେ ଯେ ପୃଥକ ନିର୍ବାଚନ ଜାତୀୟ ନୀତିର ସଂପୂର୍ଣ୍ଣ ପରିପନ୍ଥୀ ଏବଂ ଏହି ଭିତ୍ତି ଉପରେ ସ୍ୱରାଜ ପ୍ରତିଷ୍ଠିତ ହେଲେ ସେଭଳି ସ୍ୱରାଜର କୌଣସି ମୂଲ୍ୟ ରହିବ ନାହିଁ ।

ସୁଭାଷଚନ୍ଦ୍ର ଗୋପନୀୟ ସୂତ୍ରରୁ ସଂବାଦ ପାଇଥିଲେ ଯେ ବ୍ରିଟିଶ ସରକାରଙ୍କ ଭାରତର ମୁଖ୍ୟ ଜାତୀୟ ସମସ୍ୟା ସ୍ୱାଧୀନତାକୁ ଏଡେଇଦେଇ ସାମ୍ପ୍ରଦାୟିକତା ଓ ସଂଖ୍ୟାଲଘୁ ଭଳି ଛୋଟ ଛୋଟ ସମସ୍ୟା ଆଡକୁ ଗାନ୍ଧିଜୀଙ୍କୁ ଦୃଷ୍ଟି ଫେରାଇ ନେବାପାଇଁ ଉଦ୍ୟମ କରିବେ । ସେ ଏହି ସଂବାଦକୁ କଂଗ୍ରେସ କର୍ତ୍ତୃପକ୍ଷଙ୍କୁ ଜଣାଇଦେଇଥିଲେ । ଗାନ୍ଧିଜୀ ଏହାର ଉତ୍ତରରେ କହିଥିଲେ ଯେ ଲଣ୍ଡନରେ ପହଞ୍ଚିବା ପରେ ମୁଖ୍ୟ ଜାତୀୟ ସମସ୍ୟା ସଂପର୍କରେ ବ୍ରିଟିଶ ସରକାରଙ୍କ ମତ ଜାଣିବାପାଇଁ ସେ ଚେଷ୍ଟା କରିବେ । ଯଦି ସେ ଏଥିରେ ସନ୍ତୁଷ୍ଟ ନହୁଅନ୍ତି ତାହାହେଲେ ସେଇଠି ତାଙ୍କ କାମ ଶେଷ ହୋଇଯିବ । ମହାତ୍ମାଗାନ୍ଧୀ ଲଣ୍ଡନରେ ଯାଇ ଅଢେଇମାସ ରହିଲେ । ସୁଭାଷଚନ୍ଦ୍ର ଗୋପନୀୟ ସୂତ୍ରରୁ ଯେଭଳି ଖବର ପାଇଥିଲେ ତାହାହିଁ ସତ୍ୟ ହେଲା । ସଂଖ୍ୟାନ୍ୟୁନ ସମସ୍ୟା ପ୍ରଧାନ ଆଲୋଚ୍ୟ ବିଷୟରେ ପରିଣତ ହେଲା ଏବଂ ଭବିଷ୍ୟତ ଭାରତର ରାଷ୍ଟ୍ରସଂଘୀୟ ଶାସନ ଆଲୋଚନା ହେଲା । ସାମ୍ପ୍ରଦାୟିକ ସମସ୍ୟାର ସମାଧାନ ପାଇଁ କୌଣସି ସୂତ୍ର ବାହାରି ପାରିଲା ନାହିଁ । ସଂଖ୍ୟାଲଘୁ ସଂପ୍ରଦାୟର ପ୍ରତିନିଧିମାନଙ୍କୁ ବ୍ରିଟିଶ ସରକାର ମନୋନୀତ କରି ଥିଲେ । ଶେଷରେ ବ୍ରିଟିଶ ସରକାରଙ୍କ ସମର୍ଥନକ୍ରମେ ଏକ ସଂଖ୍ୟା ନ୍ୟୁନ ଚୁକ୍ତି ସଂପାଦିତ ହେଲା ଏବଂ ଏଥିରେ କେବଳ ସଂଖ୍ୟାନ୍ୟୁନ ସଂପ୍ରଦାୟଙ୍କ ଲୋକଥିବା ପ୍ରତିନିଧି ନୁହେଁ, ସେମାନେ ସଂଖ୍ୟାନ୍ୟୁନ ସମ୍ପ୍ରଦାୟର ଲୋକଙ୍କ ଦ୍ୱାରାହିଁ ନିର୍ବାଚିତ ହେବେ ବୋଲି ପ୍ରତିଶ୍ରୁତି ଦିଆଗଲା । ବ୍ରିଟିଶ ସରକାର ଦାବୀ କଲେ ଯେ ଏହି ଚୁକ୍ତି ଦେଶର ସାଢେ ୧୧କୋଟି ଲୋକଙ୍କ ଗ୍ରହଣ ଯୋଗ୍ୟ ମାତ୍ର ଗାନ୍ଧିଜୀ ଏହାର ପ୍ରତିବାଦ କରି ଜଣାଇ ଦେଇଥିଲେ କଂଗ୍ରେସ ଦେଶର ଶତକଡ଼ା ୮୫ ଭାଗ ଲୋକଙ୍କର ପ୍ରତିନିଧି । ସାମ୍ପ୍ରଦାୟିକ ସମସ୍ୟା ସମାଧାନ ହୋଇପାରୁ ନଥିବାରୁ ତାହା ଭାରତ ପାଇଁ ଏକ ସର୍ବସମ୍ମତ ସଂବିଧାନ ପ୍ରସ୍ତୁତ କରିବାରେ ବାଧା ସୃଷ୍ଟି କରୁଛି ।

ସୁଭାଷ ଚନ୍ଦ୍ରଙ୍କ ମତରେ ଗାନ୍ଧିଜୀଙ୍କ ଲଣ୍ଡନ ପରିଦର୍ଶନ ଠିକ୍ ଭାବରେ ପରିକଳ୍ପନା କରାଯାଇ ପାରିନଥିଲା ଏବଂ ତାଙ୍କ ସହିତ ଉପଯୁକ୍ତ ପରାମର୍ଶ ଦାତା ଯାଇନଥିଲେ । ସେ ଦୁଃଖ ପ୍ରକାଶ କରିଥିଲେ ଯେ ଇଉରୋପୀୟ ରାଜନୀତି ବିଶିଷ୍ଟ ନେତାମାନଙ୍କ ସହିତ ଗାନ୍ଧିଜୀଙ୍କର ସାକ୍ଷାତ ପାଇଁ ବ୍ୟବସ୍ଥା କରାଯାଇନଥିଲା । ଗାନ୍ଧିଜୀ ଭାରତକୁ ଫେରି ଆସିଲା ପରେ ସେତେବେଳର ବଡଲାଟ ଲର୍ଡ ଓୟେଲିଙ୍ଗ ଡନଙ୍କୁ ପତ୍ର ଲେଖି ବ୍ରିଟିଶ ସରକାରଙ୍କର ଭାରତ ପ୍ରତି ପ୍ରକୃତ ମତିଗତି ଜାଣିବାକୁ ଚାହିଁଥିଲେ । ବଡଲାଟ ତାଙ୍କୁ ଏକ ନାକାରାତ୍ମକ ଓ ଅସମ୍ମାନ ଜନକ ଉତ୍ତର ଦେଲେ । ତାପରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଏ ସଂପର୍କରେ ଏକ ପ୍ରସ୍ତାବ ଗ୍ରହଣ କରି ବଡଲାଟଙ୍କ ନିକଟକୁ ପଠାଇ ଦେଇଥିଲେ । ବଡଲାଟଙ୍କ ପକ୍ଷରେ ଏହା ଗ୍ରହଣ ଯୋଗ୍ୟ ହେଲା ନାହିଁ ଏବଂ ସେ ଗାନ୍ଧିଜୀଙ୍କ ସହିତ ସାକ୍ଷାତ କରିବାକୁ ମନା କରିଦେଲେ । ତେଣୁ ସ୍ୱାଧୀନତା ସଂଗ୍ରାମର ଆଉ ଏକ ପର୍ଯ୍ୟାୟ ଆରମ୍ଭ ପାଇଁ ପଥ ପ୍ରସ୍ତୁତ ହୋଇଥିଲା ।

## ସୁଭାଷଚନ୍ଦ୍ରଙ୍କୁ ଭାରତରୁ ନିର୍ବାସନ

୧୯୩୨ ମସିହା ଜାନୁଆରୀ ମାସ ଠାରୁ ବ୍ରିଟିଶ ସରକାର କଂଗ୍ରେସ ତଥା ସମସ୍ତ ଜାତୀୟ ଅନୁଷ୍ଠାନ ବିରୁଦ୍ଧରେ ଦ୍ରୁତ ବେଗରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ କଲେ । ଗାନ୍ଧିଜୀ, ଜବାହରଲାଲ ଓ ସୁଭାଷ ଚନ୍ଦ୍ର ପ୍ରମୁଖ ନେତାଙ୍କ ସମେତ ବହୁ ସଂଖ୍ୟକ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଗିରଫ କରି

ନିଆଗଲା । ପ୍ରଥମ ଚାରିମାସ ଭିତରେ ୮୦ ହଜାରରୁ ଅଧିକ ଲୋକଙ୍କୁ ଗିରଫ କରି ନିଆଯାଇଥିଲା। ସେ ବର୍ଷ ଓଡ଼ିଶାରେ କଂଗ୍ରେସର ବାର୍ଷିକ ଅଧିବେଶନ ପାଇଁ ପ୍ରସ୍ତୁତି ଚାଲିଥିଲା, ସବୁବନ୍ଦ ହୋଇଗଲା । କଂଗ୍ରେସ ଅନୁଷ୍ଠାନକୁ ବେଆଇନ ଘୋଷଣା କରାଗଲା । ଲାଠିମାଡ, ଗୁଳିମାଡ, ସମୂହ ଜୋରିମାନ, ସମ୍ପତ୍ତି ନିଲାମ, ଘର ଖାନ୍‌ତଲାସ ଓ ସଂବାଦ ପତ୍ର ଉପରେ କଟକଣା ପ୍ରଭୃତି ତୀବ୍ର ଦମନଲୀଳା ଚାଲିଲା । ୧୯୩୦ ମସିହାରେ ଗାନ୍ଧିଜୀ ଅତର୍କିତ ଭାବରେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରି ଦେଇଥିବାରୁ ସରକାର ଦମନ ପାଇଁ ପ୍ରସ୍ତୁତ ହୋଇପାରିନଥିଲେ ମାତ୍ର ଏଥର ନିଷ୍ଠୁର ଭାବରେ ଦମନଲୀଳା ଚଳେଇବାକୁ ସରକାର ଅମଲାତନ୍ତ୍ର କଳକୁ ସଂପୂର୍ଣ୍ଣ ପ୍ରସ୍ତୁତ କରି ସାରିଥିଲେ ।

ସୁଭାଷ ଚନ୍ଦ୍ରଙ୍କୁ ୧୯୩୨ ମସିହା ଜାନୁଆରୀ ମାସରେ ଗିରଫ କରାଯାଇ ମଧ୍ୟପ୍ରଦେଶର ଗୋଟିଏ ଛୋଟିଆ ଜେଲ ସିଓନିରେ ରଖାଯାଇଥିଲା । କିଛିଦିନ ପରେ ତାଙ୍କ ଭାଇ ବଙ୍ଗଳାର ବିଶିଷ୍ଟ କଂଗ୍ରେସ ନେତା ଓ ଆଇନଜୀବୀ ଶରତ ବୋଷଙ୍କୁ ଗିରଫ କରି ଆଣି ସେହି ଜେଲରେ ରଖାଗଲା । ସୁଭାଷ ଚନ୍ଦ୍ର ତାଙ୍କ ସଙ୍କଟ ସମୟରେ ଶରତଚନ୍ଦ୍ରଙ୍କ ସାହାଯ୍ୟ ଲୋଡିଥାନ୍ତି । ଦୁଇଭାଇଙ୍କ ରାଜନୈତିକ ମତବାଦ, ସେବା ଓ ଦୁଃଖବରଣ କ୍ଷେତ୍ରରେ ଅତି ଘନିଷ୍ଠ ସଂପର୍କ ଥିଲା । ଦୁଇଭାଇଙ୍କ ରାଜନୀତି ଓ ମାନସିକ କ୍ଷେତ୍ରରେ ଘନିଷ୍ଠତା ଭାରତ ଇତିହାସରେ ଅତୁଳନୀୟ । ୧୯୩୨ ମସିହା ଅଗଷ୍ଟମାସରେ ବ୍ରିଟିଶ ସରକାର ତଥାକଥିତ ସାମ୍ପ୍ରଦାୟିକ ଭାଗବଣ୍ଟା ନିଷ୍ପତ୍ତି ଘୋଷଣା କଲେ । ସମଗ୍ର ଭାରତବାସୀ ଏହି ଘୋଷଣାରେ ଆତଙ୍କିତ ହୋଇଥିଲେ । ଗାନ୍ଧିଜୀ ପୁନା ଜେଲରେ ଅନଶନ ଆରମ୍ଭ କଲେ ଏବଂ ଏଥିରେ ସମଗ୍ର ଦେଶବାସୀଙ୍କ ଭିତରେ ଆଲୋଡନ ସୃଷ୍ଟି ହେଲା । ପରସ୍ପର ବିରୋଧି ହିନ୍ଦୁ ସମ୍ପ୍ରଦାୟର ପ୍ରତିନିଧି ମିଳିତ ଭାବରେ ପୃଥକ ନିର୍ବାଚନ ନିଷ୍ପତ୍ତିକୁ ରଦ୍ଦ କରିବାପାଇଁ ନିଷ୍ପତ୍ତି କଲେ ଏବଂ ବ୍ରିଟିଶ ସରକାରଙ୍କୁ ଏହି ନିଷ୍ପତ୍ତି ଜଣାଇ ଦେଲେ । ବ୍ରିଟିଶ ସରକାର ଏହି ନିଷ୍ପତ୍ତିକୁ ମଂଜୁର କରିବାପାଇଁ ପାର୍ଲିଆମେଣ୍ଟକୁ ପଠାଇ ଦେବାପରେ ଗାନ୍ଧିଜୀ ତାଙ୍କ ଅନଶନ ଭଙ୍ଗ କରିଥିଲେ । ସୁଭାଷଚନ୍ଦ୍ର କାରାଗାର ଭିତରେ ଥାଇ ଏହି ଘଟଣାକୁ ଲକ୍ଷ୍ୟ କରିଥିଲେ । ଗାନ୍ଧିଜୀଙ୍କ ଜୀବନକୁ ରକ୍ଷା କରିବାପାଇଁ ଲୋକେ ଆତଙ୍କିତ ହୋଇପଡିଥିଲେ । ଏହାପରେ ଦେଶର ସ୍ୱାଧୀନତା ଦାବୀ ପଛରେ ପଡିଗଲା ଓ ଲୋକେ କେବଳ ଅସ୍ପୃଶ୍ୟତା ବିରୋଧୀ ଆନ୍ଦୋଳନରେ ଲାଗି ଥିବାର ସୁଭାଷଚନ୍ଦ୍ର ଦୁଃଖର ସହିତ ଲକ୍ଷ୍ୟ କରିଥିଲେ ।

ଇତି ମଧ୍ୟରେ ସିଓନି ଜେଲ ଭିତରେ ଦୁଇବୋଷ ଭାଇଙ୍କର ସ୍ୱାସ୍ଥ୍ୟ ଅତ୍ୟନ୍ତ ଖରାପ ହୋଇଗଲା । ରୋଗ ପରୀକ୍ଷା ପାଇଁ ସେମାନଙ୍କୁ ପ୍ରଥମେ ମାନ୍ଦ୍ରାଜ, ପରେ ଭୋଓଲି ଓ ଲକ୍ଷ୍ନୌକୁ ନିଆଯାଇଥିଲା । ମାତ୍ର କୌଣସି ସ୍ଥାନରେ ଡାକ୍ତରମାନେ ତାଙ୍କ ରୋଗ ଠିକ ଭାବରେ ଚିହ୍ନି ପାରିଲେ ନାହିଁକି ଉପଯୁକ୍ତ ଚିକିତ୍ସା କରାଗଲା ନାହିଁ । ସୁଭାଷଚନ୍ଦ୍ର ଦୁର୍ବଳ ହୋଇ କଙ୍କାଳସାର ହୋଇପଡିଲେ । ବ୍ରିଟିଶ ସରକାର କୌଣସି ଅବସ୍ଥାରେ ଏମିତିକି ତାଙ୍କ ରୁଗ୍ଣ ପିତାମାତାଙ୍କୁ ଦେଖିବାପାଇଁ ଖଲାସ କରିବାକୁ ରାଜି ହେଲେ ନାହିଁ । ଶେଷରେ ତାଙ୍କୁ ଚିକିତ୍ସାପାଇଁ ଇଉରୋପକୁ ପଠାଇ ଦେବା ପାଇଁ ସ୍ଥିର ହେଲା । ମାତ୍ର ଇଉରୋପ ଯିବା ଖର୍ଚ୍ଚ ବା ଚିକିତ୍ସାବାବଦ ଖର୍ଚ୍ଚ ଦେବାକୁ ସରକାର ମନା କରିଦେଲେ । ୧୯୩୩ ଫେବୃଆରୀ ମାସରେ ନିଜ ଖର୍ଚ୍ଚରେ ସେ ଇଉରୋପ ଯାତ୍ରା କରିଥିଲେ । ମାର୍ଚ୍ଚମାସରେ ସେ ଭିଏନାରେ ପହଞ୍ଚିଲେ । ସେଠାରେ ଉପଯୁକ୍ତ ଚିକିତ୍ସକଙ୍କ ଦ୍ୱାରା ତାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରାଯାଇ ଚିକିତ୍ସା କରାଗଲା ଓ ତାଙ୍କ ସ୍ୱାସ୍ଥ୍ୟରେ ସନ୍ତୋଷଜନକ ଅଗ୍ରଗତି ହେଲା । ସେ ଟିକିଏ ସୁସ୍ଥ ହେବାପରେ ତତ୍‌କାଳୀନ ଇଉରୋପୀୟ ରାଜନୀତି ଅଧ୍ୟୟନ କରିବା ଆରମ୍ଭ କଲେ ଏବଂ ଭାରତର ସ୍ୱାଧୀନତା ହାସଲରେ ସହାୟକ ହେବାଭଳି ବ୍ୟକ୍ତିମାନଙ୍କ ସହିତ ସଂପର୍କ ସ୍ଥାପନ କଲେ ।

## ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖିବା ନିଷ୍ପତ୍ତିର ସମାଲୋଚନା

ସେତେବେଳେ ଭାରତରେ ବ୍ରିଟିଶ ସରକାରଙ୍କ ନିଷ୍ଠୁର ଦମନ ଲୀଳା ସତ୍ତ୍ୱେ ଆଇନ ଅମାନ୍ୟ ଆନ୍ଦୋଳନ ଚଳେଇ ରଖିବା ପାଇଁ ବିଭିନ୍ନ ସ୍ଥାନରେ ସ୍ୱାଧୀନତା ସଂଗ୍ରାମୀ ମାନେ ଉଦ୍ୟମ ଚଳେଇଥିଲେ । ସେ ବର୍ଷ ଦେଶର ବହୁ ସ୍ଥାନରେ ଅତ୍ୟନ୍ତ ଉତ୍ସାହର ସହିତ ଜାନୁଆରୀ ୨୬ ତାରିଖରେ ସ୍ୱାଧୀନତା ଦିବସ ପାଳିତ ହୋଇଥିଲା । ୧୯୩୩ ମାର୍ଚ୍ଚମାସରେ ବ୍ରିଟିଶ ସରକାର ଏକ ଶ୍ୱେତପତ୍ର ପ୍ରକାଶ କରି ସେଥିରେ ଭାରତର ସାମ୍ବିଧାନିକ ସଂସ୍କାର ଜଣାଇଦେଲେ । ଏହା ପରେପରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ କଲିକତା ଠାରେ ଡାକିବାପାଇଁ ନିଷ୍ପତ୍ତି କରାଗଲା । ବ୍ରିଟିଶ ସରକାର ସାଙ୍ଗେ ସାଙ୍ଗେ ଅଧିବେଶନର ମନୋନୀତ ସଭାପତି ମଦନ ମୋହନ ମାଳବ୍ୟଙ୍କ ସମେତ ବହୁ କଂଗ୍ରେସ ପ୍ରତିନିଧିଙ୍କୁ ଗିରଫ କରିନିଆଗଲା । ବ୍ରିଟିଶ ସରକାରଙ୍କ ଦ୍ୱାରା ପ୍ରକାଶିତ 'ଶ୍ୱେତପତ୍ର'କୁ ଅଗ୍ରାହ୍ୟ କରିବା ଥିଲା କଂଗ୍ରେସ ଅଧିବେଶନର ମୁଖ୍ୟ ପ୍ରସ୍ତାବ । ଏହାର କିଛିଦିନ ପରେ ସମଗ୍ର ଦେଶବାସୀ ବିସ୍ମିତ ହୋଇ ଜାଣିଲେ ଯେ ମହାତ୍ମାଗାନ୍ଧୀ ଆଇନ ଆନ୍ଦୋଳନକୁ ସ୍ଥଗିତ ରଖିବା ପାଇଁ ଘୋଷଣା କରିଛନ୍ତି । ଭିଏନାଠାରୁ ସୁଭାଷଚନ୍ଦ୍ର ବୋଷ ଓ ଭିଥଲ ଭାଇ ପଟେଲ ଏକ ମିଳିତ ବିବୃତିରେ ଗାନ୍ଧିଜୀଙ୍କ ନିଷ୍ପତ୍ତିକୁ ତୀବ୍ର ଭାବରେ ସମାଲୋଚନା କରିଥିଲେ । ସେମାନେ ଏହି ବିବୃତିରେ କହିଥିଲେ ଯେ ଗତ ତିରିଶ ବର୍ଷର ତ୍ୟାଗ ଓ ଦୁଃଖ ବରଣ ଏହାଦ୍ୱାରା ବୃଥା ହୋଇଗଲା । ମହାତ୍ମାଗାନ୍ଧୀଙ୍କ ପ୍ରତି ତାଙ୍କର ଗଭୀର ଶ୍ରଦ୍ଧା ଓ ସମ୍ମାନ ରହିଥିବା ସତ୍ତ୍ୱେ ଜାତୀୟ କ୍ଷେତ୍ରରେ ସୁଭାଷଚନ୍ଦ୍ର ସବୁବେଳେ ଖୋଲାଖୋଲି ତାଙ୍କ ମତ ପ୍ରକାଶ କରିଆସିଥିଲେ । ସେତେବେଳେ ଗାନ୍ଧିଜୀ ଜେଲ ଭିତରେ ଅନଶନ କରିଥିଲେ । ଏହିଭଳି ଅନଶନ କରୁଥିବା ବେଳେ ତାଙ୍କର ସମାଲୋଚନା କରିବା ଏକ ଗର୍ହିତ କାର୍ଯ୍ୟ ବୋଲି ବହୁଲୋକ ସମାଲୋଚନା କରିଥିଲେ ।

## ଭାରତର ବିପ୍ଳବର ଲକ୍ଷ୍ୟ ସାମ୍ୟବାଦ

ଆଇନ ଅମାନ୍ୟ ଆନ୍ଦୋଳନ ପରେ ପରେ ଲଣ୍ଡନଠାରେ ଅନୁଷ୍ଠିତ ହେଉଥିବା ଭାରତୀୟ ରାଜନୈତିକ ସମ୍ମିଳନୀରେ ଅଧ୍ୟକ୍ଷତା କରିବାପାଇଁ ସୁଭାଷଚନ୍ଦ୍ରଙ୍କୁ ନିମନ୍ତ୍ରଣ କରାଯାଇଥିଲା ମାତ୍ର ବ୍ରିଟିଶ ସରକାର ତାଙ୍କୁ ଲଣ୍ଡନ ଯିବାକୁ ଅନୁମତି ଦେଲେ ନାହିଁ । ସେ ଏହି ସମ୍ମିଳନୀକୁ ଯେଉଁ ଭାଷଣ ଲେଖି ପଠାଇଥିଲେ ସେଥିରେ ଭାରତର ଚରମ ଲକ୍ଷ୍ୟ ବିଷୟରେ ସୂଚନା ଦେଇ କହିଥିଲେ- ସପ୍ତଦଶ ଶତାବ୍ଦୀରେ ଇଂଲଣ୍ଡର ସାମ୍ବିଧାନିକ ଓ ଗଣତାନ୍ତ୍ରିକ ଶାସନ ଚିନ୍ତାଧାରା ଜରିଆରେ ବିଶ୍ୱସଭ୍ୟତାକୁ ସମୃଦ୍ଧ କରିଥିଲା । ସେହିପରି ଅଷ୍ଟାଦଶ ଶତାବ୍ଦୀରେ ଫ୍ରାନସ୍ ତାର ମୁକ୍ତି, ଐକ୍ୟ ଓ ଭ୍ରାତୃତ୍ୱ ଚିନ୍ତାଧାରା ଜରିଆରେ ବିଶ୍ୱ ସଂସ୍କୃତିକୁ ଚମତ୍କାର ଅବଦାନ ଦେଇଥିଲା । ଅଷ୍ଟାଦଶ ଶତାବ୍ଦୀରେ ଜର୍ମାନୀର ମାର୍କସବାଦୀ ଚିନ୍ତାଧାରା ଏକ ମୂଲ୍ୟବାନ ଅବଦାନ ଏବଂ ବିଂଶ ଶତାବ୍ଦୀରେ ସୋଭିଏତ୍ ରୁଷ ସର୍ବହରା ବିପ୍ଳବ, ସର୍ବହରା ଶାସନ ଓ ସର୍ବହରା ସଂସ୍କୃତି ଜରିଆରେ ବିଶ୍ୱସଂସ୍କୃତିକୁ ସମୃଦ୍ଧ କରିଥିଲା । ବିଶ୍ୱ ସଭ୍ୟତା ଓ ସଂସ୍କୃତିକୁ ପରବର୍ତ୍ତୀ ଅବଦାନ ଦେବ ଭାରତ ବର୍ଷ ।

## ଇଉରୋପରେ ଭାରତର ବେସରକାରୀ ରାଷ୍ଟ୍ରଦୂତ

ଇଉରୋପରେ ନିର୍ବାସିତ ହୋଇ ରହିଥିବାବେଳେ ସୁଭାଷଚନ୍ଦ୍ର ଜାତୀୟବାଦୀ ଭାରତର ବେସରକାରୀ ରାଷ୍ଟ୍ରଦୂତର ଦାୟିତ୍ୱ ନିଜେ ଗ୍ରହଣ କରିଥିଲେ । ଇଉରୋପରେ ନିର୍ବାସିତ ହୋଇ ରହିଥିବାବେଳେ ବ୍ରିଟିଶ ସରକାର ତାଙ୍କୁ ଲଣ୍ଡନ ଓ ଜର୍ମାନୀ ଯିବାପାଇଁ ଅନୁମତି ଦେଇନଥିଲେ କାରଣ ସେତେବେଳେ ଇଂଲଣ୍ଡ ଓ ଜର୍ମାନୀରେ ବହୁସଂଖ୍ୟକ ଛାତ୍ର ରହି ବୈଷୟିକ ଶିକ୍ଷା ଗ୍ରହଣ କରୁଥିବାରୁ ସୁଭାଷଚନ୍ଦ୍ର ସେମାନଙ୍କୁ ତାଙ୍କର ଉଗ୍ରପନ୍ଥୀ ମତବାଦରେ ପ୍ରଭାବିତ କରି ଜାତୀୟ ଆନ୍ଦୋଳନ ପ୍ରତି ଆକୃଷ୍ଟ କରିବା ଆଶଙ୍କା କରି ସରକାର ଏପରି ଆଦେଶ ଦେଇଥିଲେ । ସୁଭାଷ ଚନ୍ଦ୍ର ପୋଲାଣ୍ଡ,

ଚେକୋସ୍ଲୋଭାକିଆ, ହଙ୍ଗେରୀ, ଇଟାଲି, ସୁଇଜର ଲାଣ୍ଡ, ଜର୍ମାନୀ ଓ ଫ୍ରାନ୍ସ ପ୍ରଭୃତି ଦେଶର ବିଶିଷ୍ଟ ରାଜନୈତିକ ନେତା ତଥା ଅର୍ଥନୀତି ସାହିତ୍ୟ ସମାଜ ବିଜ୍ଞାନୀ ଓ ବୈଜ୍ଞାନିକ ମାନଙ୍କ ସହିତ ଘନିଷ୍ଠ ସଂପର୍କ ସ୍ଥାପନ କରିଥିଲେ ଏବଂ ଅନେକ ସ୍ଥାନରେ ଭାରତରେ ସ୍ୱାଧୀନତା ସଂଗ୍ରାମ ସଂବନ୍ଧରେ ଭାଷଣ ଦେଇଥିଲେ । ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଭାରତବାସୀ ଯେଉଁ ସଂଗ୍ରାମ ଚଳେଇଛନ୍ତି, ସେଥିପ୍ରତି ସେହି ଦେଶ ମାନଙ୍କରେ ନୈତିକ ସମର୍ଥନ ସେ ଲୋଡିଥିଲେ । ଭିଏନାଠାରେ ସେ ଅଷ୍ଟ୍ରିଆ ଭାରତ ସମାଜ ସ୍ଥାପନ କରିଥିଲେ ଏବଂ ଅଷ୍ଟ୍ରିଆ ଦେଶର ବାଡ୍ ବାଦଠାରେ ଚିକିତ୍ସିତ ହୋଇ ଥିଲେ । ପ୍ରଥମ ମହାଯୁଦ୍ଧ ବେଳେ ଚେକୋସ୍ଲୋଭାକିଆର ଯେଉଁ ବିରାଟ ଅନୁଷ୍ଠାନ ଦେଶ ବାହାରେ ଥାଇ ଦେଶର ସ୍ୱାଧୀନତା ପାଇ ସଂଗ୍ରାମ ଚଳେଇ ଥିଲେ ସେହି ଅନୁଷ୍ଠାନର ନେତାମାନଙ୍କ ସହିତ ଆଲୋଚନା କରିବାପାଇଁ ସେ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ଚେକୋସ୍ଲୋଭାକ-ଭାରତସଂଘ ପ୍ରତିଷ୍ଠା କରି ୧୯୩୪ ମସିହାରେ ସେ ଏହାର ଉଦ୍‌ଘାଟନ କରି ଉଦ୍‌ବୋଧନ ଦେଇଥିଲେ ସେ ମଧ୍ୟ ପୋଲାଣ୍ଡରେ ଭାରତୀୟ ସଂଗ୍ରାମ ପ୍ରତି ଲୋକଙ୍କ ସହାନୁଭୂତି ଓ ଆଗ୍ରହ ସୃଷ୍ଟି କରି ପ୍ରଥମ ମହାଯୁଦ୍ଧ ବେଳେ ପୋଲାଣ୍ଡ ଜାତୀୟ ବାହିନୀ ଜାପାନରେ ଯେପରି ସାମରିକ ଶିକ୍ଷା କରିଥିଲେ ତାହା ଅଧ୍ୟୟନ କରିଥିଲେ ।

ସୁଭାଷଚନ୍ଦ୍ର ଇଉରୋପରେ ଅବସ୍ଥାନ କରୁଥିବାବେଳେ ହିଟଲର ନାସନାଲ ସୋସାଲିଷ୍ଟ ଦଳ ଗଠନ କରି ଜର୍ମାନୀର ଶାସନ ଅଧିକାର କରି ନେଇଥିବାରୁ ଜର୍ମାନୀର ରାଜନୈତିକ ଘଟଣାବଳୀ ପ୍ରତି ସମଗ୍ର ବିଶ୍ୱର ଦୃଷ୍ଟି ଆକୃଷ୍ଟ ହୋଇଥିଲା, ଇଟାଲିରେ ମୁସୋଲିନି ଅଧିକ ଶକ୍ତିଶାଳୀ ହୋଇ ଉଠୁଥିଲେ । ମହାତ୍ମାଗାନ୍ଧୀ ଲଣ୍ଡନରେ ଗୋଲଟେବୁଲ ବୈଠକରେ ଯୋଗଦେଇ ଭାରତ ଫେରୁଥିବା ବେଳେ ମୁସୋଲିନି ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଥିଲେ । ବର୍ଲିନରେ ଭାରତ ଜର୍ମାନୀ ସମିତି ଜର୍ମାନୀ ବୈଦେଶିକ ଅଫିସ କର୍ମକର୍ତ୍ତାଙ୍କ ସହିତ ସୁଭାଷ ଚନ୍ଦ୍ରଙ୍କ ଆଲୋଚନା କରିବାପାଇଁ ବ୍ୟବସ୍ଥା କରାଇଥିଲେ ମାତ୍ର ଏହିଭଳି ଆଲୋଚନା ବିଶେଷ ଫଳପ୍ରଦ ହୋଇନଥିଲା । କାରଣ ବ୍ରିଟେନ ପ୍ରତି ହିଟଲରଙ୍କ ମତିଗତି ତଥା ବିଭିନ୍ନ ଉପନିବେଶ ଅଧୀନରେ ଥିବା ପରାଧୀନ ଦେଶମାନଙ୍କ ପ୍ରତି ହିଟଲରଙ୍କ ପ୍ରତିକ୍ରିୟାଶୀଳ ମତିଗତି ଯୋଗୁ ହିଟଲରଙ୍କ ଦଳ ଭାରତର ସ୍ୱାଧୀନତା ସଂଗ୍ରାମ ପ୍ରତି ନିରପେକ୍ଷ ରହିଥିଲେ ମାତ୍ର ତାଙ୍କ ଦଳର କେତେକ ଅସନ୍ତୁଷ୍ଟ ସଭ୍ୟ ବଙ୍ଗଳାର ବିପ୍ଲବୀ ଅନୁଷ୍ଠାନମାନଙ୍କୁ ଗୋପନରେ ସାହାଯ୍ୟ କରିବେ ବୋଲି ସୁଭାଷଚନ୍ଦ୍ରଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ଜର୍ମାନୀରେ କାର୍ଯ୍ୟ କରୁଥିବା ଭାରତୀୟଙ୍କ ସହିତ ମଧ୍ୟ ସୁଭାଷଚନ୍ଦ୍ର ସଂପର୍କ ସ୍ଥାପନ କରିଥିଲେ । ସେମାନଙ୍କ ଭିତରୁ କେତେକ ପ୍ରଥମ ମହାଯୁଦ୍ଧ ବେଳେ ଜର୍ମାନୀରେ ନିର୍ବାସିତ ହୋଇ ରହିଥିଲେ ଏବଂ ସେତେବେଳେ ଭାରତରେ ବ୍ରିଟେନ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ଉଦ୍ୟମ କରିଥିଲେ ।

ଜର୍ମାନୀରେ ସରକାରୀ କର୍ମକର୍ତ୍ତାଙ୍କ ଆଲୋଚନା ଫଳପ୍ରଦ ନହେବାରୁ ସୁଭାଷଚନ୍ଦ୍ର ସଂବାଦ ଜରିଆରେ ବିବୃତିଦେଇ ଓ ବିଭିନ୍ନ ଅନୁଷ୍ଠାନରେ ଉଦ୍‌ବୋଧନ ଦେଇ ଏବଂ ଜର୍ମାନୀର ବୁଦ୍ଧିଜୀବୀମାନଙ୍କ ସହିତ ଅଧିକ ସଂପର୍କ ସ୍ଥାପନକରି ଭାରତର ମତାମତ ପ୍ରଚାରରେ ମନୋନିବେଶ କରିଥିଲେ । ମ୍ୟୁନିକ୍‌ରେ ଥିବା ଜର୍ମାନୀ ଏକାଡେମିର ଡାଇରେକ୍ଟର ଫେଇଡେରଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ସ୍ଥାପିତ ହୋଇଥିଲା ଏବଂ ସେ ଭାରତ ଓ ଜର୍ମାନୀ ଭିତରେ ସହଯୋଗ ରକ୍ଷାକରି କାର୍ଯ୍ୟ କରିବା ପାଇଁ ଏକ ପରିକଳ୍ପନା ପ୍ରସ୍ତୁତ କରିଥିଲେ । ୧୯୩୬ ମାର୍ଚ୍ଚ ମାସରେ ସେ ଭାରତକୁ ଫେରିଆସିବା ପୂର୍ବରୁ ଏଥର ଫେଲଡରଙ୍କ ନିକଟକୁ ଏକ ପତ୍ରରେ ଲେଖିଥିଲେ ଯେ ସେ ନାଜିଦଳର ନୀତିରେ ଘୋର ଅସନ୍ତୁଷ୍ଟ । ହିଟଲର ନାଜିଦର୍ଶନ ସଂପର୍କରେ ମ୍ୟୁନିକ୍‌ରେ ଯେଉଁ ବକ୍ତୃତା ଦେଇଛନ୍ତି ତାହା ଅତ୍ୟନ୍ତ ଦୁର୍ବଳ ବୈଜ୍ଞାନିକ ଭିତ୍ତି ଉପରେ ପ୍ରତିଷ୍ଠିତ । ଇଉରୋପ ଓ ଏସିଆ ଏକାଠି ରହିପାରିବେନାହିଁ ବୋଲି ସେ ଯାହା କହୁଛନ୍ତି ତାହା ଐତିହାସିକ ଦୃଷ୍ଟିରୁ ଭ୍ରମାତ୍ମକ ତଥ୍ୟ । ଜର୍ମାନୀ

ସ୍ୱାର୍ଥପରତା ଓ ଜାତିଗତ ଔଦ୍ଧତ୍ୟରେ ଅନୁପ୍ରାଣିତ । ଆମେ ପୃଥିବୀର ସର୍ବାପେକ୍ଷା ବୃହତ ସମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ସଂଗ୍ରାମ ଚଳେଇଛୁ । କୌଣସି ଦେଶଠାରୁ ଆମେ ଅପମାନ ବରଦାସ୍ତ କରିବୁ ନାହିଁ । ଐତିହାସିକ କାରଣରୁ ସୁଭାଷଚନ୍ଦ୍ର ଇଟାଲି ଦେଶ ପ୍ରତି ଅଧିକ ଆକୃଷ୍ଟ ହୋଇଥିଲେ । ନାନା ଭାବରେ ବିଭକ୍ତ ଏହି ଦେଶ ଯେପରି ଐକ୍ୟବଦ୍ଧ ହେଲା ଓ ଶେଷରେ ମୁକ୍ତି ସଂଗ୍ରାମ ଚଳାଇ ଗୋଟିଏ ଦେଶରେ ପରିଣତ ହେଲା ସେଥିରୁ ଭାରତ ଯଥେଷ୍ଟ ଶିକ୍ଷାଲାଭ କରିପାରିବ । ଇଟାଲିରେ କାର୍ବନେର ନାମରେ ଏକ ଗୁପ୍ତ ସଂଗଠନ ଇଟାଲିରେ ସ୍ୱାଧୀନତା ପୂର୍ବରୁ ଯେପରି ସ୍ୱାଧୀନତା ସଂଗ୍ରାମ ପାଇଁ ପଥ ପରିଷ୍କାର କରିଥିଲା ଏବଂ ତା ଫଳରେ ଇଟାଲି ରାଷ୍ଟ୍ର ପ୍ରତିଷ୍ଠିତ ହେଲା ତାହା ସେ ଗଭୀର ଭାବରେ ଅଧ୍ୟୟନ କରିଥିଲେ । ଇଟାଲୀର ବିପ୍ଳବୀନେତା ମାଜିନି ଯେପରି ଇଟାଲିର ସ୍ୱାଧୀନତା ସଂଗ୍ରାମ ପାଇଁ ଯେପରି ଗୋଟିଏ କ୍ଷୁଦ୍ର ଅଥଚ ସୁସଂଗଠିତ ଅନୁଷ୍ଠାନ ଗଠନ କରିଥିଲେ ତାହା ସହିତ ସୁଭାଷ ଚନ୍ଦ୍ରଙ୍କ ଶେଷ ଜୀବନର କାର୍ଯ୍ୟାନୁଷ୍ଠାନ ସହିତ ବିଶେଷ ସାମଞ୍ଜସ୍ୟ ରହିଥିଲା । ଏହି ସମୟରେ ମୁସୋଲିନଙ୍କ ସହିତ ନେତାଜୀଙ୍କ ସାକ୍ଷାତବେଳେ ଭାରତକୁ ସ୍ୱାଧୀନ କରିବାପାଇଁ ସେ ଯେଉଁ ବୈପ୍ଳବିକ ପନ୍ଥାର ପରିକଳ୍ପନା କରିଥିଲେ ତାହା ପ୍ରକାଶ କରିବା ପରେ ମୁସୋଲିନି ସେଥିରେ ସନ୍ତୋଷ ପ୍ରକାଶ କଲେ ଏବଂ ସେଥିରେ ଭାରତ ସ୍ୱାଧୀନ ହୋଇପାରିବ ବୋଲି ତାଙ୍କର ବିଶ୍ୱାସ ହୋଇଥିଲା ।

ମୁସ୍ତାଫା କାମାଲପାଶାଙ୍କ ନେତୃତ୍ୱରେ ତୁର୍କି ଦେଶରେ ଯେଉଁ ମୌଳିକ ପରିବର୍ତ୍ତନ ଘଟିଥିଲା ସେଥିରେ ସୁଭାଷ ଚନ୍ଦ୍ର ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । ତାଙ୍କ ମତରେ ଭାରତ ଓ ତୁର୍କିର ସମସ୍ୟା ଭିତରେ ବହୁ କ୍ଷେତ୍ରରେ ସାମଞ୍ଜସ୍ୟ ରହିଛି ଏବଂ ଉଭୟ ଦେଶରେ ସାମାଜିକ କ୍ଷେତ୍ରରେ ବହୁ ପରିବର୍ତ୍ତନର ଆବଶ୍ୟକତା ରହିଛି । କାମାଲପାଶା ଜର୍ମାନୀର ବୈଷୟିକ ଓ ସାମରିକ ଜ୍ଞାନ କୌଶଳ ପ୍ରୟୋଗ କରି ପୁରୁଣାକାଳିଆ ତୁର୍କି ଦେଶକୁ ଯେପରି ଏକ ଆଧୁନିକ ଦେଶରେ ପରିଣତ କଲେ ତାହା ସୁଭାଷ ଚନ୍ଦ୍ର ଅତ୍ୟନ୍ତ ଆଗ୍ରହର ସହିତ ଲକ୍ଷ୍ୟ କରିଥିଲେ । ବିଶେଷଭାବରେ ତୁର୍କି ଦେଶର ପ୍ରଚଳିତ ବହୁ ପ୍ରକାର ଲିପିବଦଳରେ କାମାଲପାଶା ଯେପରି ତୁର୍କି ଭାଷା ପାଇଁ ରୋମୀୟ ଲିପି ପ୍ରଚଳନ କରିଥିଲେ ସେଥିରେ ସେ ସନ୍ତୋଷ ପ୍ରକାଶ କରିଥିଲେ ।

## ପିତାଙ୍କୁ ଜୀବିତାବସ୍ଥାରେ ଦେଖି ପାରିଲେ ନାହିଁ

୧୯୩୪ ମସିହା ଶେଷଭାଗ ଆଡକୁ ସୁଭାଷ ଚନ୍ଦ୍ର ତାଙ୍କ ପିତା ଗୁରୁତର ଅସୁସ୍ଥ ହୋଇ ପଡିଥିବାର ସଂବାଦ ପାଇଥିଲେ । ଶେଷ ଜୀବନରେ ପିତା ଶଯ୍ୟାଶାୟୀ ହୋଇ ପଡିଥିବା ବେଳେ ସୁଭାଷ ଚନ୍ଦ୍ର ତାଙ୍କ ପାଖରେ ଉପସ୍ଥିତ ହୁଅନ୍ତୁ ବୋଲି ତାଙ୍କ ପରିବାରରେ ସମସ୍ତେ ଚାହୁଁଥିଲେ । ଏହି ସଂବାଦ ପାଇ ସାଙ୍ଗେ ସାଙ୍ଗେ ଭାରତଯାତ୍ରା କଲେ ମାତ୍ର ସେ ଆସି ପହଞ୍ଚିବା ବେଳକୁ ତାଙ୍କ ପିତା ସଂସାର ଛାଡ଼ି ଚାଲିଯାଇଥିଲେ । ସେ ଦେଢଦିନ ବିଳମ୍ବରେ ଆସି ପହଞ୍ଚିଥିଲେ । ପିତାଙ୍କ ଶେଷ ଆଶା ସେ ପୂରଣ କରିପାରିଲେ ନାହିଁ । ସେ ଆସି ପହଞ୍ଚିବା ମାତ୍ରେ ତାଙ୍କୁ ନିଜ ବାସଭବନ ଏଲଗିନ ରୋଡଠାରେ ଅନ୍ତରୀଣବନ୍ଦୀ କରି ରଖାଯାଇଥିଲା । ସେ ସେଠାରେ ଜଣେ ବନ୍ଦୀ ଭାବରେ ପ୍ରାୟ ମାସେ ପର୍ଯ୍ୟନ୍ତ ରହିଥିଲେ । ସେ ତାଙ୍କର ଚିକିତ୍ସାପାଇଁ ତଥା ସେତେବେଳେ ସେ ଭାରତର ମୁକ୍ତି ସଂଗ୍ରାମ ନିମନ୍ତେ ଯେଉଁ ପରିକଳ୍ପନା କରିଥିଲେ ସେଥିପାଇଁ କାର୍ଯ୍ୟ ଚଳେଇବାକୁ ପୁଣି ଇଉରୋପକୁ ଫେରିଯାଇଥିଲେ । ପୁତ୍ର ଯାହା ଠିକ ବୋଲି ବିଚାର କରୁଛି ତାହା କରୁ ଏବଂ ଯେଉଁଠି ଇଚ୍ଛା ସେଠି ଥାଉ ସେଥିରେ ଯେଉଁ ପିତାଙ୍କର ସବୁବେଳେ ଆଶୀର୍ବାଦ ଥିଲା ସେହି ପିତାଙ୍କୁ ମୃତ୍ୟୁ ଶଯ୍ୟାରେ ମଧ୍ୟ ପୁତ୍ର ଯଦି ଦେଖିପାରିବାର ସୁଯୋଗ ନ ପାଇଲା ସେ ପୁତ୍ର କିପରି ମର୍ମାହତ ହୋଇଥିବ ତାହା କଳ୍ପନାତୀତ ।

## ସୁଭାଷ ଚନ୍ଦ୍ରଙ୍କ ଆତ୍ମଜୀବନୀ ମୁକ୍ତି ସଂଗ୍ରାମ

ଇଉରୋପରେ ନିର୍ବାସିତ ହୋଇ ରହିଥିବାବେଳେ ନେତାଜୀ ସୁଭାଷ ଚନ୍ଦ୍ର ତାଙ୍କ ଆତ୍ମ ଜୀବନୀର ଅଧିକାଂଶ

ଭାଗ ଇଣ୍ଡିଆନ ଷ୍ଟ୍ରଗଲ ବା ଭାରତର ମୁକ୍ତି ସଂଗ୍ରାମ ନାମଦେଇ ଲେଖିଥିଲେ । ବର୍ଷକରୁ କିଛି ଅଧିକ ସମୟ ଭିତରେ ସେ ଏହି ପୁସ୍ତକଟି ଲେଖିଥିଲେ । ସେତେବେଳେ ସେ ତଥାପି ଅସୁସ୍ଥ ଥିଲେ ଏବଂ ପୂର୍ବପର ସଂବନ୍ଧ ଜାଣିବାପାଇଁ ତାଙ୍କ ପାଖରେ ଆବଶ୍ୟକୀୟ ପୁସ୍ତକମାନ ନଥିଲା । ତାଙ୍କରି ଯେତିକି ମନେଥିଲା ତାକୁ ମନେ ପକାଇ ସେ ବିଷୟ ଗୁଡିକ ଲେଖିଥିଲେ । ଏହି ପୁସ୍ତକଟି ୧୯୩୫ ମସିହା ଜାନୁଆରୀ ମାସରେ ଲଣ୍ଡନରେ ପ୍ରକାଶିତ ହୋଇଥିଲା । ଭାରତ ସରକାର ଲଣ୍ଡନରେ ଥିବା ଭାରତ ମନ୍ତ୍ରୀଙ୍କ ସମର୍ଥନ କ୍ରମେ ଏହି ପୁସ୍ତକଟିକୁ ସାଙ୍ଗେ ସାଙ୍ଗ ଭାରତରେ ବାଜ୍ୟାପ୍ତ କରିଦେଇଥିଲେ ଏବଂ ଭାରତକୁ ଏହି ପୁସ୍ତକଟି ଆସିପାରିବ ନାହିଁ ବୋଲି କଟକଣା ଜାରି କରିଥିଲେ । ଏହି ପୁସ୍ତକଟି ଆତଙ୍କବାଦ ଓ ପ୍ରତ୍ୟକ୍ଷ ସଂଗ୍ରାମକୁ ଉତ୍ସାହିତ କରିବ ବୋଲି ବାଜ୍ୟାପ୍ତ କରାଯାଇଥିଲା । ଭାରତବର୍ଷରେ ଲୋକେ ଯଦି ଏହି ପୁସ୍ତକଟି ପଢିବାକୁ ପାଇଥାନ୍ତେ ତାହେଲେ ଏହାର କି ପ୍ରଭାବ ପଡିଥାଆନ୍ତା ତାହା କଳ୍ପନା କରିହେବନାହିଁ ।

ନେତାଜୀ ସୁଭାଷଙ୍କ ଏହି ଆତ୍ମଜୀବନୀଟି ଇଂଲଣ୍ଡର ସଂବାଦ ପତ୍ର ତଥା ଇଉରୋପୀୟ ରାଜନୀତିଜ୍ଞ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କ ଦ୍ଵାରା ଉଚ୍ଚପ୍ରଶଂସିତ ହୋଇଥିଲା । ମାଞ୍ଚେଷ୍ଟର ଗାର୍ଡିୟନ, ସନଡେଟାଇମସ, ଡେଲିହେରାଲଡ ଓ ନିଉଜ କ୍ରନିକାଲ ପ୍ରଭୃତି ଇଂଲଣ୍ଡର ପ୍ରଭାବଶାଳୀ ଦୈନିକ ପତ୍ରିକା ଗୁଡିକରେ ପୁସ୍ତକଟିର ଉଚ୍ଚପ୍ରଶଂସା କରାଯାଇ କୁହାଯାଇଥିଲା ଯେ ଭାରତର ଅନ୍ୟତମ ସୁଯୋଗ୍ୟ ରାଜନୀତିଜ୍ଞ ଓ ବୁଦ୍ଧିଜୀବୀଙ୍କ ପ୍ରଣୀତ ଏହି ପୁସ୍ତକରେ ଭାରତୀୟ ରାଜନୈତିକ ପରିସ୍ଥିତିର ଯେଉଁ ନିରପେକ୍ଷ ଓ ନିଖୁଣ ଚିତ୍ର ଦିଆଯାଇଛି ଏହା ପୂର୍ବରୁ ଅନ୍ୟତ୍ର ମିଳିନଥିଲା । ଏହା ଏକ ଦକ୍ଷ, ନିରପେକ୍ଷ ଓ ବିଜ୍ଞ ବ୍ୟକ୍ତିଙ୍କ ସାଧନାର ଫଳ । ଫ୍ରାନ୍ସର ବିଶିଷ୍ଟ ମନିଷି, ନୋବେଲ ପୁରସ୍କାର ପ୍ରାପ୍ତ ରୋମାଁରୋଲା ଏହି ପୁସ୍ତକଟି ଅଧ୍ୟୟନ କରି ମତ ପ୍ରକାଶ କରିଥିଲେ ଯେ ଭାରତୀୟ ସ୍ଵାଧୀନତା ସଂଗ୍ରାମ ସଂବନ୍ଧରେ ଜ୍ଞାନଲାଭ କରିବାପାଇଁ ଏହି ପୁସ୍ତକଟି ଏକାନ୍ତ ଆବଶ୍ୟକ । ଏଥିରେ ଜଣେ ଐତିହାସିକଙ୍କ ଅସାଧାରଣ ଯୋଗ୍ୟତା, ମାନସିକ ଦକ୍ଷତା ପ୍ରଦର୍ଶୀତ ହୋଇଛି । ରୋମଠାରେ ସୁଭାଷଚନ୍ଦ୍ର ମୁସୋଲିନିଙ୍କୁ ନିଜେଯାଇ ଏହି ପୁସ୍ତକଟି ଉପହାର ଦେଇଥିଲେ ଓ ମୁସୋଲିନି ଭାରତୀୟ ସ୍ଵାଧୀନତା ସଂଗ୍ରାମ ପ୍ରତି ତାଙ୍କର ସହାନୁଭୂତି ପ୍ରକାଶ କରିଥିଲେ ।

ଇଉରୋପର ଦେଶମାନଙ୍କ ଭିତରେ ଆୟର୍ଲାଣ୍ଡ ଭାରତର ସ୍ଵାଧୀନତା ସଂଗ୍ରାମ ପ୍ରତି ସର୍ବାପେକ୍ଷା ଅଧିକ ଆଗ୍ରହ ପ୍ରକାଶ କରିଥିଲା । ଆୟର୍ଲାଣ୍ଡ ଉଭୟ ଦେଶର ଏକ ଶତ୍ରୁ । ଇଂଲଣ୍ଡ ବିରୁଦ୍ଧରେ ଯେପରି ନିଜ ଦେଶକୁ ମୁକ୍ତ କରିବାପାଇଁ ଆୟର୍ଲାଣ୍ଡ ସଂଗ୍ରାମ ଚଳେଇଥିଲା । ଭାରତର ବିଶେଷକରି ବଙ୍ଗଳାର ବିପ୍ଳବୀମାନେ ସେଥିରେ ବହୁ ଭାବରେ ଅନୁପ୍ରାଣୀତ ହୋଇଥିଲେ । ସୁଭାଷଚନ୍ଦ୍ର ଇଉରୋପରେ ନିର୍ବାସିତ ହୋଇ ରହିଥିବାବେଳେ ସ୍ଵାଧୀନତା ସଂଗ୍ରାମରେ ଆୟର୍ଲାଣ୍ଡ ଅଧିବାସୀଙ୍କ ଅଭିଜ୍ଞତାକୁ ଘନିଷ୍ଠ ଭାବରେ ଅଧ୍ୟୟନ କରିଥିଲେ । ପ୍ରଥମ ମହାଯୁଦ୍ଧ ବେଳେ ଆୟର୍ଲାଣ୍ଡର ବିପ୍ଳବୀମାନେ ବ୍ରିଟେନର ଶତ୍ରୁ ଜର୍ମାନିର ଯେପରି ସାହାଯ୍ୟ ନେଇଥିଲେ, ସେହି ପଦ୍ଧତିକୁ ସୁଭାଷ ଚନ୍ଦ୍ର ବିଶେଷ ଭାବରେ ଅଧ୍ୟୟନ କରିଥିଲେ । ଆୟର୍ଲାଣ୍ଡ ଓ ଭାରତର ସ୍ଵାଧୀନତା ସଂଗ୍ରାମ ଭିତରେ ଏକାଭଳି ରାଜନୈତିକ ପଦ୍ଧତି ଅନୁସରଣ କରାଯାଉଥିବା ସେ ଲକ୍ଷ୍ୟ କରିଥିଲେ । ସୁଭାଷ ଚନ୍ଦ୍ର ୧୯୩୬ ମସିହା ପ୍ରଥମ ଭାଗରେ ଆୟର୍ଲାଣ୍ଡ ବିପ୍ଳବର ନେତା ଡିଭେଲେରଙ୍କ ସହିତ ସାକ୍ଷାତ କରି ଉଭୟ ଦେଶର ଯେଉଁ ସବୁ ବିଷୟରେ ଏକାଭଳି ସ୍ଵାର୍ଥ ରହିଛି ସେ ସଂପର୍କରେ ଦୀର୍ଘ ଆଲୋଚନା କରିଥିଲେ । ସେ ଭାରତବର୍ଷ ସଂପର୍କରେ ଇଂରେଜୀ, ଫରାସୀ ଓ ଜର୍ମାନୀ ଭାଷାରେ ପ୍ରଚାରପତ୍ର ଆୟର୍ଲାଣ୍ଡରୁ ଆନ୍ତର୍ଜାତୀୟ ସଂବାଦ ପତ୍ରମାନଙ୍କୁ ପଠାଇଥିଲେ । ଆୟର୍ଲାଣ୍ଡ ବିପ୍ଳବର ନେତ୍ରୀ ମାଡାମ ମାକବ୍ରାଇଡ ସୁଭାଷଚନ୍ଦ୍ରଙ୍କ ଆୟର୍ଲାଣ୍ଡ ଗସ୍ତ ଫଳରେ ତାଙ୍କ କାର୍ଯ୍ୟର ଅଗ୍ରଗତି ପାଇଁ ପ୍ରେରଣା ପାଇଥିଲେ ।

ସୁଭାଷ ଚନ୍ଦ୍ର ଇଉରୋପରେ ନିର୍ବାସିତ ହୋଇ ରହିଥିଲାବେଳେ ସୋସାଲିଷ୍ଟ ଦଳ ଜାତୀୟ ରାଜନୈତିକ ଦଳ ରୂପେ ଜନ୍ମଲାଭ କଲା । ଭାରତର ବାମପନ୍ଥୀ ମାନଙ୍କର ଭାରତୀୟ ରାଜନୀତିରେ ଅଭ୍ୟୁଦୟକୁ ସେ ସ୍ୱାଗତ କରିଥିଲେ । ତାଙ୍କ ମତରେ ସୋସାଲିଷ୍ଟମାନଙ୍କ ଚିନ୍ତାଧାରା ଭିତରେ ସାମଞ୍ଜସ୍ୟ ନାହିଁ । ସେମାନଙ୍କର କେତେକ ଚିନ୍ତାଧାରା ପୁରୁଣା କାଳିଆ ସେମାନଙ୍କର ଏକ ସ୍ପଷ୍ଟ ରାଜନୈତିକ ମତ, କାର୍ଯ୍ୟକ୍ରମ ଓ କାର୍ଯ୍ୟାନୁଷ୍ଠାନ ପଦ୍ଧତି ରହିବା ଆବଶ୍ୟକ ଭବିଷ୍ୟତର ଭାରତୀୟ ରାଜନୈତିକ ଦଳ ଦେଶର ନ୍ୟସ୍ତ ସ୍ୱାର୍ଥଙ୍କ ପାଇଁ ନୁହେଁ ଭାରତର ଜନସାଧାରଣଙ୍କ ସ୍ୱାର୍ଥ ସାଧନ ନିମନ୍ତେ କାର୍ଯ୍ୟ କରିବା ଉଚିତ ବୋଲି ସେ ମତ ପ୍ରକାଶ କରି କହିଥିଲେ ଯେ ସ୍ୱାଧୀନ ଭାରତ ଏକ ରାଷ୍ଟ୍ରସଂଘୀୟ ଶାସନ ହେବ ବୋଲି ସେମାନଙ୍କର ଚରମ ଲକ୍ଷ୍ୟ ହେବ ଏବଂ ଭାରତ ନିଜଶକ୍ତି ଉପରେ ଦଣ୍ଡାୟମାନ ହେବାପାଇଁ ଶାସକ ଦଳଙ୍କର କିଛିକାଳ ପାଇଁ ଏକଛତ୍ର ଶାସନ କ୍ଷମତା ରହିବ ଏକ ରାଷ୍ଟ୍ରୀୟ ଯୋଜନା ପଦ୍ଧତି ଅନୁସୃତ ହେବ ଏବଂ କୃଷି ଓ ଶିଳ୍ପ ପୁନର୍ଗଠିତ ହେବ । ଏହା ଦେଶର ଜାତିବେଦ ଭଳି ପ୍ରତିବନ୍ଧକକୁ ଲୋପ କରି ଦେବ ଏବଂ ସମଗ୍ର ଦେଶପାଇଁ ଏକାଭଳି ଭୂସଂସ୍କାର ପଦ୍ଧତି କର୍ଯ୍ୟକାରୀ ହେବ । ଶାସକଦଳ ସମସ୍ତ ବାମପନ୍ଥୀ ସଂଗଠନକୁ ଏକ କାର୍ଯ୍ୟକାରିଣୀ ସଂସ୍ଥାରେ ଏକଜୁଟ କରିବ ଏବଂ ତାହେଲେ ଜାତୀୟ ଦୃଶ୍ୟପଟରେ ସେମାନେ ଏକାବେଳକେ କାର୍ଯ୍ୟ କରି ଚାଲିବେ ।

ଭାରତରେ କମ୍ୟୁନିଜିମ୍ ନୀତି ଗୃହୀତ ନ ହେବାର ଅନେକ କାରଣ ରହିଛି ବୋଲି ସେ ମତ ପ୍ରକାଶ କରିଥିଲେ । ସେ କହିଥିଲେ ଯେ ଭାରତୀୟ ଜାତୀୟ ଆନ୍ଦୋଳନ ମୁଖ୍ୟତଃ ଏକ ଜାତୀୟବାଦୀ ଆନ୍ଦୋଳନ । ଭାରତର ଜନସାଧାରଣଙ୍କୁ ବିଦେଶୀ ଶାସନରୁ ମୁକ୍ତ କରିବାହିଁ ଏହି ଆନ୍ଦୋଳନର ଉଦ୍ଦେଶ୍ୟ । ତାଙ୍କ ମତରେ ବିଭିନ୍ନ ମତ ଭିତରେ ସମନ୍ୱୟ ବା ଐକ୍ୟ ସ୍ଥାପନ କରିବା ହେବ ଭାରତର କାର୍ଯ୍ୟ । ଏହା ଉପରେ ଭବିଷ୍ୟତ ଭାରତ ନିର୍ଭର କରିବ । ଏହାକୁ ସେ ସାମ୍ୟବାଦ ବୋଲି କହନ୍ତି । ଏହା ଏକ ପୁରାତନ ଭାରତୀୟ ନୀତି ଦେଶର ସାମାଜିକ କ୍ଷେତ୍ରରେ ପରସ୍ପର ବିରୋଧୀ ମତ ଭିତରେ ସମନ୍ୱୟ ସ୍ଥାପନ ହିଁ ଏହାର ଉଦ୍ଦେଶ୍ୟ ।

## ସୁଭାଷଚନ୍ଦ୍ରଙ୍କ ପିତ୍ତକୋଷ ଅସ୍ତ୍ରୋପଚାର

୧୯୩୫ ମସିହାରେ ଅଷ୍ଟ୍ରିଆଠାରେ ସୁଭାଷ ଚନ୍ଦ୍ରଙ୍କର ଏକ ରଗ୍ଣ ପିତ୍ତକୋଷ ଅପସାରଣ ପାଇଁ ଗୁରୁତର ଅସ୍ତ୍ରୋପଚାର ହେଲା। ଡାକ୍ତରମାନେ ଶେଷରେ ତାଙ୍କ ଅସୁସ୍ଥତାର ମୂଳ କାରଣ ଖୋଜି ପାଇଲେ । ସେ ସମୟରେ ଗୁରୁତର ଅସ୍ତ୍ରୋପଚାର ବିପଜ୍ଜନକ ହୋଇଥାଏ, ତାପରେ ସେ ନିଜ ଦେଶଠାରୁ ବହୁ ଦୂରରେ ଏହିଭଳି ବିପଜ୍ଜନକ ଅବସ୍ଥାର ସମ୍ମୁଖୀନ ହେଉଥିବାରୁ ତାଙ୍କର ଶେଷ ଇଚ୍ଛା ସେ ଲିଖିତ ଆକାରରେ ରଖି ଦେଇ ଯିବାକୁ ଚାହାନ୍ତି କି ବୋଲି ତାଙ୍କୁ ପଚରାଯାଇଥିଲା । ସୁଭାଷଚନ୍ଦ୍ର ଖଣ୍ଡିଏ ଛୋଟିଆ କାଗଜରେ ଲେଖିଦେଲେ ମୋର ଯାହା ସମ୍ପତ୍ତି ଅଛି, ସେଥିରେ ମୋ ଦେଶବାସୀ ଅଧିକାରୀ ଏବଂ ଯାହା ଋଣ ଅଛି ତାହା ମୋ ଭାଇ ଶରତଙ୍କୁ ଦେଇଗଲି ।

ଇଉରୋପରେ ଭ୍ରମଣକାଳ ଭିତରେ ସୁଭାଷ ଚନ୍ଦ୍ର ସୁଇଜରଲ୍ୟାଣ୍ଡ ପରିଦର୍ଶନ କରିଥିଲେ ଏବଂ ଜେନେଭାଠାରେ ଜାତିସଂଘ ଅଫିସକୁ ଯାଇ ନିଜ ଦେଶର ସ୍ୱାଧୀନତାର ଅଧିକାର ବିଷୟରେ ଦାବୀ କରିବାକୁ ଚାହିଁଥିଲେ ମାତ୍ର ପରାଧୀନ ଦେଶର କଥା ଶୁଣିବାକୁ ସେଠାରେ କେହି ପ୍ରସ୍ତୁତ ନଥିଲେ । ସେ ଫ୍ରାନ୍ସ ଦେଶର ମନିଷି ରୋମାଁ ରୋଲାଁଙ୍କୁ ଭେଟିଥିଲେ । ତାଙ୍କ ସାକ୍ଷାତ ବିଷୟରେ ରୋମାଁ ରୋଲାଁ ତାଙ୍କ ଡାଏରୀରେ ଏକ ବିରାଟ ଦେଶର ଜଣେ ଅଜ୍ଞାତ ପଥିକଙ୍କୁ ଭେଟିଥିଲେ ବୋଲି ଉଲ୍ଲେଖ କରିଛନ୍ତି ଏବଂ ଲେଖିଛନ୍ତି ଯେ ସେ ଜଣେ ଗମ୍ଭୀର, ବୁଦ୍ଧିମାନ ଓ କର୍ମବ୍ୟସ୍ତ ବ୍ୟକ୍ତି ବୋଲି ତାଙ୍କ ଆତ୍ମଜୀବନୀରେ ପ୍ରମାଣ କରିଛନ୍ତି । ସେ ଘଟଣା ଓ ବ୍ୟକ୍ତି ବିଶେଷଙ୍କୁ ଜଣେ ପ୍ରକୃତ ରାଜନୀତିଜ୍ଞ, ଭାବରେ ଏବଂ ନିରପେକ୍ଷ ଭାବରେ ବିଚାର କରିଛନ୍ତି । ସେ ଆତଙ୍କବାଦକୁ ଏକ ସୁସ୍ଥ ରାଜନୈତିକ ଅସ୍ତ୍ର ବୋଲି ମନେ

କରନ୍ତି ନାହିଁ। ସେ ସଂଗଠିତ ବିରୋଧର ପକ୍ଷପାତି ଏବଂ ଯଦି ସଂଗ୍ରାମ ପାଇଁ ଦରକାର ହୁଏ ତାହେଲେ ସେ ହିଂସାର ଆଶ୍ରୟ ନେବା ସପକ୍ଷରେ । ଇଉରୋପୀୟ ଯୁଦ୍ଧବେଳେ ଇଂଲଣ୍ଡ ଯୁଦ୍ଧରେ ଲାଗି ରହିଥିବା ବେଳେ ଭାରତର ସ୍ୱାଧୀନତା ହାସଲ ସମ୍ଭବ ହେବ ବୋଲି ତାଙ୍କର ସରଳ ବିଶ୍ୱାସ ରହିଛି । ସୋଭିଏଟ୍ ରୁଷ ଭାରତକୁ ସାହାଯ୍ୟ କରିବାର ଯଥାର୍ଥତା ଅଛି ବୋଲି ତାଙ୍କର ମତ ।

## ଜାତୀୟ ନେତୃତ୍ୱ ପାଇଁ ସମୟ ଉପନୀତ ହେଲା

୧୯୩୬ ମସିହା ମଧ୍ୟଭାଗ ବେଳକୁ ସୁଭାଷଚନ୍ଦ୍ରଙ୍କ ସ୍ୱାସ୍ଥ୍ୟର ବିଶେଷ ଉନ୍ନତି ଘଟିଥିଲା ତେଣୁ ସେ ଭାରତକୁ ଫେରି ଆସିବାପାଇଁ ନିଷ୍ପତ୍ତି କଲେ । ବିଶେଷ ଭାବରେ ସେ ବର୍ଷ ପଣ୍ଡିତ ଜବାହରଲାଲ ନେହେରୁ ଲକ୍ଷ୍ନୌଠାରେ ଅନୁଷ୍ଠିତ ହେଉଥିବା କଂଗ୍ରେସର ବାର୍ଷିକ ଅଧିବେଶନରେ ଅଧ୍ୟକ୍ଷତା କରୁଥିବାରୁ ସେ ସେହି ଅଧିବେଶନରେ ଯୋଗଦେବାକୁ ଚାହୁଁଥିଲେ । ବ୍ରିଟିଶ ସରକାର ତାଙ୍କ ନିଷ୍ପତ୍ତିର ସୂଚନା ପାଇ ଭିଏନା ଠାରେ ଥିବା ବ୍ରିଟିଶ ଦୂତାବାସ ଜରିଆରେ ତାଙ୍କୁ ଜଣାଇ ଦେଲେଯେ ସେ ଭାରତ ଫେରିଲେ ମଧ୍ୟ ସେଠାରେ ମୁକ୍ତ ହୋଇ ରହିପାରିବେନାହିଁ। ଏହି ସତର୍କବାଣୀ ସତ୍ତ୍ୱେ ସୁଭାଷଚନ୍ଦ୍ର ୧୯୩୬ ମସିହା ମାର୍ଚ୍ଚମାସରେ ଭିଏନାଠାରୁ ଆସି ବମ୍ବେରେ ପହଞ୍ଚିଲେ । ଭାରତରେ ପହଞ୍ଚିବା ମାତ୍ରେ ତାଙ୍କୁ ଗିରଫ କରି ନେଇ ଜେଲରେ ରଖାଗଲା । କିଛିଦିନପରେ ତାଙ୍କୁ ଆଣି ଦାର୍ଜିଲିଙ୍ଗର କୁର୍ସିଆଙ୍ଗଠାରେ ତାଙ୍କଭାଇ ଶରତବୋଷଙ୍କ ବାସଭବନଠାରେ ଅଟକବନ୍ଦୀ ଭାବରେ ରଖାଗଲା । ଆଇନ ଅମାନ୍ୟ ଆନ୍ଦୋଳନ ବେଳେ ଶରତବୋଷଙ୍କୁ ସେହିଘରେ ଅଟକ ବନ୍ଦୀ ରୂପେ ରଖାଯାଇଥିଲା। ସୁଭାଷଚନ୍ଦ୍ର ସେହିଘରେ ଥିଲାବେଳେ ତାଙ୍କ ଜୀବନୀ ଲେଖକ ଆତ୍ମୀୟ ଶିଶିର କୁମାର ବୋଷ ସେଠାରେ କିଛିଦିନ ତାଙ୍କ ସହିତ ରହି ଆଲୋଚନା କରିଥିଲେ । ସେତେବେଳେ ସେ ତାଙ୍କ ଚରିତ୍ରର ମହତ୍ତ୍ୱପୂର୍ଣ୍ଣ ଗୁଣଗୁଡିକ ନିକଟରୁ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ।ଜାତୀୟ ଓ ଆନ୍ତର୍ଜାତୀୟ ସମସ୍ୟା ସେ ଯେପରି ଭାବରେ ବିଶ୍ଳେଷଣ କଲେ ସେଥିରୁ ସେ ସ୍ପଷ୍ଟ ଭାବରେ ଅନୁଭବ କରିଥିଲେ ଯେ ସୁଭାଷଚନ୍ଦ୍ର ସେତେବେଳେ ଜାତୀୟ ନେତୃତ୍ୱ ନେବାଭଳି ପରିପକ୍ୱତା ହାସଲ କରିସାରିଥିଲେ ।

କିଛିଦିନ ପରେ ପୁଣି ତାଙ୍କ ସ୍ୱାସ୍ଥ୍ୟର ଅବନତି ଘଟିଲା ଏବଂ ବର୍ଷ ଶେଷ ବେଳକୁ ତାଙ୍କୁ କଲିକତା ମେଡିକାଲ କଲେଜରେ ଭର୍ତ୍ତି କରାଗଲା । ସେହି ସମୟରେ ୧୯୩୫ ମସିହା ଆଇନ ଅନୁସାରେ ନିର୍ବାଚନ ହୋଇ ଦେଶର ରାଜନୈତିକ ପରିସ୍ଥିତିରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ହେବାକୁ ଯାଉଥିଲା ମାତ୍ର ସେ ସେଥିରେ ଅଂଶଗ୍ରହଣ କରିବାରୁ ବଞ୍ଚିତ ହେଉଥିବାରୁ ଦୁଃଖିତ ହୋଇଥିଲେ । ତାଙ୍କ ଅନୁପସ୍ଥିତିରେ ତାଙ୍କ ଭାଇ ଶରତଚନ୍ଦ୍ର ବୋଷଙ୍କ ଉପରେ ବଙ୍ଗଳା କଂଗ୍ରେସର ଦାୟିତ୍ୱ ନ୍ୟସ୍ତ ହୋଇଥିଲା । ଶରତଚନ୍ଦ୍ର କଂଗ୍ରେସ ଦଳ ପକ୍ଷରୁ ନିର୍ବାଚନ ପ୍ରଚାର ଚଳାଇଥାନ୍ତି । ବ୍ରିଟିଶ ସରକାରଙ୍କର ସୁଭାଷଚନ୍ଦ୍ରଙ୍କ ପ୍ରତି ଏହିଭଳି ପ୍ରତିଶୋଧମୂଳକ କାର୍ଯ୍ୟାନୁଷ୍ଠାନକୁ ସେତେବେଳେ ସମଗ୍ର ଦେଶରେ ନିନ୍ଦା କରାଯାଇ ଥିଲା । ତାଙ୍କୁ ତୁରନ୍ତ ମୁକ୍ତ କରି ଦେବାପାଇଁ ବ୍ରିଟିଶ ସରକାରଙ୍କଠାରେ ଦାବୀ କରାଯାଇଥିଲା । କେନ୍ଦ୍ରବିଧାନ ପରିଷଦରେ ଏ ସଂପର୍କରେ ଏକ ମୁଲତବୀ ପ୍ରସ୍ତାବ ଆଗତ କରାଯାଇ ତାଙ୍କ ବିରୁଦ୍ଧରେ କି ନିର୍ଦ୍ଦିଷ୍ଟ ଅଭିଯୋଗ ରହିଛି ତାହା ପ୍ରମାଣ କରିବାପାଇଁ ଆହ୍ୱାନ କରାଯାଇଥିଲା। ଏଥିପାଇଁ ମଇମାସରେ ସମଗ୍ର ଦେଶରେ ହରତାଳ ପାଳିତ ହେଲା ମାତ୍ର ବିଦେଶୀ ଶାସକ ଏସବୁ କିଛି କର୍ଣ୍ଣପାତ କଲେ ନାହିଁ। ପ୍ରାୟ ବର୍ଷକ ପରେ ୧୯୩୭ ମସିହା ମାର୍ଚ୍ଚମାସରେ ସ୍ୱାସ୍ଥ୍ୟ କାରଣରୁ ତାଙ୍କୁ ବିନା ସର୍ତ୍ତରେ ଖଲାସ କରିଦିଆଗଲା । ଖଲାସ ହେବାପରେ କଲିକତା ଠାରେ ସୁଭାଷଚନ୍ଦ୍ରଙ୍କୁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇ ଥିଲା । ତାଙ୍କ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ସେ କିଛିଦିନ ଉତ୍ତର ଭାରତର ଡେଲହାଉସିଠାରେ ଡଃ ଧର୍ମବୀରଙ୍କ ଅତିଥି ରୂପେ ରହିଥିଲେ ।

୧୯୩୫ ମସିହା ଭାରତ ଶାସନ ଆଇନ ଅନୁସାରେ ଭାରତର ବିଭିନ୍ନ ରାଜ୍ୟରେ ସାଧାରଣ ନିର୍ବାଚନ ହୋଇ ୧୧ଟି ପ୍ରଦେଶ ଭିତରୁ ଛଅଟି ପ୍ରଦେଶରେ କଂଗ୍ରେସ ସଂଖ୍ୟା ଗରିଷ୍ଠ ଦଳ ଭାବରେ ବିଜୟ ଲାଭ କରିଥିଲା ଓ ବଙ୍ଗଳା ଓ ଆସାମ ଭଳି ପ୍ରଦେଶରେ କଂଗ୍ରେସ ଦଳ ଏକକ ସଂଖ୍ୟା ଗରିଷ୍ଠଦଳ ଭାବରେ ବିଜୟୀ ହୋଇଥିଲା । ବଙ୍ଗଳାରେ ଫଜଲୁଲ ହକଙ୍କ ନେତୃତ୍ୱରେ ଗଠିତ କୃଷକ ପ୍ରଜାଦଳଙ୍କ ସହିତ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ଉଦ୍ୟମ କରିଥିଲେ କାରଣ ତାଫଳରେ ମୁସଲିମ ଲିଗଦଳ ଏକୁଟିଆ ହୋଇଯାଇଥାଆନ୍ତା ମାତ୍ର କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷ ସେଥିପାଇଁ ଅନୁମତି ଦେଲେନାହିଁ । ୧୯୩୭ ଶେଷ ବେଳକୁ ନିଖିଳ ଭାରତ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଲାବେଳେ ସୁଭାଷ ଚନ୍ଦ୍ର ପରବର୍ତ୍ତୀ ହରିପୁରା କଂଗ୍ରେସ ଅଧିବେଶନର ସଭାପତି ନିର୍ବାଚିତ ହେବେ ବୋଲି ଜଣାପଡି ଯାଇଥିଲା ।

## ତାଙ୍କ ଅପୂର୍ଣ୍ଣ ଆତ୍ମଜୀବନୀ ଲେଖା ଶେଷ କଲେ

ସୁଭାଷଚନ୍ଦ୍ର ଏହି ସମୟରେ ଅଳ୍ପ କିଛିଦିନ ପାଇଁ ପୁଣି ଇଉରୋପ ଗସ୍ତରେ ଯାଇଥିଲେ । ପ୍ରଥମତଃ ତାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଏବଂ ଦ୍ୱିତୀୟରେ ସେ ସେତେବେଳର ଇଉରୋପରେ ଯେଉଁ ଦ୍ରୁତ ପରିବର୍ତ୍ତନ ଘଟୁଥିଲା ତାକୁ ନିକଟରେ ରହି ଅଧ୍ୟୟନ କରିବା ପାଇଁ କଂଗ୍ରେସ ସଭାପତି ଭଳି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ସେ ଏହା କରିବାକୁ ଚାହୁଁଥିଲେ । ସେ ପ୍ରଥମେ ଅଷ୍ଟ୍ରିଆରେ କିଛିଦିନ ବିଶ୍ରାମ ନେଇଥିଲେ । ଏହିଠାରେ ସେ ତାଙ୍କର ଅସଂପୂର୍ଣ୍ଣ ଆତ୍ମଜୀବନୀ ଇଣ୍ଡିଆନ ପିଲଗ୍ରୀମ ପୁସ୍ତକଟିକୁ ୧୦ଟି ପରିଚ୍ଛେଦରେ ବିଭକ୍ତ କରି ଲେଖିପକାଇଥିଲେ । ଏଥିପାଇଁ ପୂର୍ବରୁ ସେ ଗୋଟିଏ ବ୍ରିଟିଶ ପ୍ରକାଶକ ସଂସ୍ଥାଙ୍କ ସହିତ ଚୁକ୍ତି କରିଥିଲେ । ଏହା ତାଙ୍କ ଆତ୍ମଜୀବନୀର ପ୍ରଥମ ଭାଗ ଏବଂ ଏଥିରେ ୧୯୨୧ ମସିହାରେ ଆଇ.ସି.ଏସ. ଚାକିରିରୁ ଇସ୍ତଫା ଦେବା ପର୍ଯ୍ୟନ୍ତ ତାଙ୍କ ପ୍ରଥମ ଜୀବନର ଘଟଣାବଳୀ ଲେଖିଛନ୍ତି ।

## କଂଗ୍ରେସ ସଭାପତି ସୁଭାଷଚନ୍ଦ୍ର

ସୁଭାଷଚନ୍ଦ୍ର ଭାରତ ଫେରିବା ପୂର୍ବରୁ ୧୯୩୮ ଜାନୁଆରୀ ମାସରେ ଲଣ୍ଡନ ପରିଦର୍ଶନ କରିଥିଲେ । ଲଣ୍ଡନଠାରେ ଥିଲାବେଳେ ସେ କଂଗ୍ରେସ ସଭାପତି ଭାବରେ ନିର୍ବାଚିତ ହୋଇଛନ୍ତି ବୋଲି ଘୋଷଣା କରାଯାଇଥିଲା ଲଣ୍ଡନରେ ଅଳ୍ପଦିନ ରହିଥିବା ଭିତରେ ସେ ଆୟର୍ଲାଣ୍ଡର ନେତା ଇମନଡି ଭେଲେରାଙ୍କ ସହିତ ସାକ୍ଷାତ କରିଥିଲେ । ଡିଭେଲେରା ସେତେବେଳେ ସ୍ୱାଧୀନ ଆୟର୍ଲାଣ୍ଡ ସଂପର୍କରେ ଶେଷପର୍ଯ୍ୟାୟ କଥାବାର୍ତ୍ତା ଚଳେଇ ଥାଆନ୍ତି । ସେ ମଧ୍ୟ ବ୍ରିଟିଶ କମ୍ୟୁନିଷ୍ଟ ପାର୍ଟିର ନେତା ପାମିଦତ୍ତଙ୍କ ସହିତ ସାକ୍ଷାତ କରି ଆଲୋଚନା କରିଥିଲେ । ସେ ତାଙ୍କୁ ଭାରତର ଶେଷ ପର୍ଯ୍ୟାୟ ସ୍ୱାଧୀନତା ସଂଗ୍ରାମରେ ଜାତୀୟ କଂଗ୍ରେସର ଭୂମିକା ସଂପର୍କରେ ସ୍ପଷ୍ଟ ଧାରଣା ଦେଇ କହି ଥିଲେ ଯେ ଭାରତର ଶ୍ରମିକ ଓ କୃଷକ ଅନୁଷ୍ଠାନମାନଙ୍କୁ ସଂପୃକ୍ତ କରି ସେ କଂଗ୍ରେସକୁ ଏକ ଗଣଭିତ୍ତିକ ସାମ୍ରାଜ୍ୟବାଦ ବିରୋଧୀ ଅନୁଷ୍ଠାନରେ ପରିଣତ କରିବାକୁ ଚାହାନ୍ତି । ସ୍ୱାଧୀନତା ହାସଲ କରିସାରିବା ପରେ ଆମେ ସମାଜବାଦ ଦିଗରେ ଗତି କରିବାକୁ ଚାହୁଁ ଏହି ଦୁଇଟି ଉଦ୍ଦେଶ୍ୟ ସାଧନ ଉଦ୍ଦେଶ୍ୟରେ ଜାତୀୟ କଂଗ୍ରେସ ଅନୁଷ୍ଠାନ ସଂଗଠିତ ହେବ ବୋଲି ତାଙ୍କ ମତଥିଲା । କଂଗ୍ରେସ ସଭାପତି ନିର୍ବାଚିତ ହେବାପରେ ୧୯୩୮ ମସିହା ଜାନୁଆରୀ ଶେଷ ସପ୍ତାହରେ ସୁଭାଷ ଚନ୍ଦ୍ର କଲିକତାରେ ପହଞ୍ଚିଲାବେଳେ ତାଙ୍କୁ ଅଭୂତପୂର୍ବ ସଂବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଏହି ସଂବର୍ଦ୍ଧନା ଉତ୍ସବରେ ବଙ୍ଗଳାର ସମସ୍ତ ଜାତୀୟବାଦୀ ସଂଗଠନ ସମବେତ ହୋଇଥିଲେ । ୧୯୨୨ ମସିହା କଂଗ୍ରେସ ଅଧିବେଶନର ସଭାପତି ଭାବରେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ନିର୍ବାଚିତ ହେବାପରେ ସେପର୍ଯ୍ୟନ୍ତ ବଙ୍ଗଳାରୁ ଆଉ କେହି ସଭାପତି ନିର୍ବାଚିତ ହୋଇନଥିଲେ ।

## ସଭାପତି ସୁଭାଷ ଚନ୍ଦ୍ରଙ୍କ ଭାଷଣରେ କଂଗ୍ରେସର ରୂପରେଖ

କଂଗ୍ରେସ ସଭାପତି ସୁଭାଷ ଚନ୍ଦ୍ରଙ୍କୁ ୧୯୩୮ ଫେବୃଆରୀ ମାସରେ ଗୁଜୁରାଟର ହରିପୁରା ଗ୍ରାମଠାରେ ଏକ ଅଭିନବ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ତାଙ୍କୁ ୫୧ଟି ବଳଦଟଣାଗାଡିରେ ସେଠାକୁ ନିଆଯାଇଥିଲା । ବିବିଧ ବାଦ୍ୟ ସହ ଗ୍ରାମବାସୀମାନେ ବାଟରେ ତାଙ୍କୁ ଉତ୍ସସିତ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ । ସଭାପତି ଭାବରେ ସୁଭାଷ ଚନ୍ଦ୍ର ସେଠାରେ ଯେଉଁ ଅଭିଭାଷଣ ଦେଇଥିଲେ ତହା ଏକ ମୂଲ୍ୟବାନ ଐତିହାସିକ ନିବନ୍ଧ । ସେ ତାଙ୍କ ଅଭିଭାଷଣରେ ବିଶ୍ୱଇତିହାସରେ ବିଭିନ୍ନ ସାମ୍ରାଜ୍ୟମାନଙ୍କର ଉତ୍ଥାନ ଓ ପତନର ଇତିହାସ ଓ ସାମ୍ରାଜ୍ୟବାଦର ପରସ୍ପର ବିରୋଧୀ କାର୍ଯ୍ୟକଳାପ ବର୍ଣ୍ଣନା କରି ବହୁକାଳ ପୂର୍ବେ ଲେନିନ ଯାହା କହିଥିଲେ ତାହା ବିଶ୍ଳେଷଣ କରି କହିଲେ ଯେ ବ୍ରିଟେନ୍ ବହୁ ଦେଶକୁ ଦାସତ୍ୱ ବନ୍ଧନରେ ରଖିଥିବାରୁ ତାର ପ୍ରତିକ୍ରିୟା ଶକ୍ତିଶାଳୀ ହୋଇଛି ଏବଂ ନିଜର ବୋଝରେ ନିଜେ ଭାଙ୍ଗି ପଡିବ । ସେ କହିଥିଲେ ଯେ ବ୍ରିଟିଶ ସାମ୍ରାଜ୍ୟର ସ୍ୱାର୍ଥଦୃଷ୍ଟିରୁ ତଥା ବିଶ୍ୱର ପରାଧୀନ ଦେଶମାନଙ୍କ ସ୍ୱାର୍ଥ ଦୃଷ୍ଟିରୁ ବ୍ରିଟିଶ ସାମ୍ରାଜ୍ୟକୁ ଧ୍ୱଂସ କରିବା ଭାରତବାସୀଙ୍କ ଏକ ଐତିହାସିକ କର୍ତ୍ତବ୍ୟ, ବ୍ରିଟେନ ସମଗ୍ର ବିଶ୍ୱରେ ଭେଦଭାବ ସୃଷ୍ଟିକରି ତାର ସୁବିଧା ନେଇ ଶାସନ ଚଳେଇ ଆସିଛି । ଭାରତରେ ପ୍ରଚଳିତ ୧୯୩୫ ମସିହା ଭାରତ ଶାସନ ଆଇନରେ ସେହିନୀତି ଅନୁସରଣ କରାଯାଇଛି । ଜାତୀୟତା ମୌଳିକ ନୀତି ଉପରେ ଭିତ୍ତିକରି ଆମେ ସାମ୍ପ୍ରଦାୟିକ ଓ ସଂଖ୍ୟାନ୍ୟୁନ ସମସ୍ୟାର ସମାଧାନ କରି ପାରିବା । କଂଗ୍ରେସର ନୀତି ହେଲା ନିଜେ ବଞ୍ଚି ଅନ୍ୟକୁ ବଞ୍ଚିବାର ସୁଯୋଗ ଦେବା ତେଣୁ ବିଭିନ୍ନ ଭାଷାଭାଷୀ ଅଞ୍ଚଳରେ ଧର୍ମବିଶ୍ୱାସ ଓ ସାଂସ୍କୃତିକ ପରମ୍ପରାର ସ୍ୱତନ୍ତ୍ରତାରେ ଆମେ ହସ୍ତକ୍ଷେପ କରିବୁ ନାହିଁ । ସେ ପ୍ରତିଶ୍ରୁତି ଦେଇଥିଲେ ଯେ କଂଗ୍ରେସର ଗଣତାନ୍ତ୍ରିକ ଭିତ୍ତି ଭବିଷ୍ୟତରେ ବିଭିନ୍ନ ଦେଶୀୟ ରାଜ୍ୟ ଗୁଡିକୁ ଏକଛତ୍ର ଶାସନରେ ପରିଣତ କରାଇଦେବ ନାହିଁ । ଏଠାରେ ଉପରୁ ଶାସନ ଚାପିଦିଆ ନହୋଇ ନିର୍ବାଚିତ ଲୋକପ୍ରତିନିଧି ମାନଙ୍କ ଦ୍ୱାରାହିଁ ଶାସନ ପରିଚାଳିତ ହେବ ।

ଜାତୀୟ କଂଗ୍ରେସ ସଭାପତି ଭାବରେ ସୁଭାଷଚନ୍ଦ୍ର ଘୋଷଣା କରିଥିଲେ ଯେ ଦେଶରେ ଯୁଦ୍ଧ ପରବର୍ତ୍ତୀ ଜାତୀୟ ସମସ୍ୟା ଭିତରୁ ଦାରିଦ୍ର୍ୟ ଦୂରୀକରଣ, ନୀରକ୍ଷରତା ଦୂରୀକରଣ, ସ୍ୱାସ୍ଥ୍ୟରକ୍ଷା ଓ ବୈଜ୍ଞାନିକ ଉପାୟରେ ଉତ୍ପାଦନ ଓ ବଣ୍ଟନକୁ ଅଗ୍ରାଧିକାର ଦିଆଯିବ । ସମାଜବାଦ ଢାଞ୍ଚାରେ ଏହା କରାଯିବ । ଆମ ଦେଶର ଜାତୀୟ ସରକାର ଏକ ଯୋଜନା କମିସନ ଗଠନ କରିବ । ତୁରନ୍ତ କାର୍ଯ୍ୟକ୍ରମ ତଥା ଦୀର୍ଘସ୍ଥାୟୀ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯିବ । ଦେଶବାସୀଙ୍କୁ ଆତ୍ମୋତ୍ସର୍ଗ ପାଇଁ ପ୍ରସ୍ତୁତ କରିବାକୁ ହେବ, ଭାରତର ଐକ୍ୟ ପ୍ରତିଷ୍ଠା କରିବାକୁ ହେବ ଏବଂ ସ୍ଥାନୀୟ ଓ ସାଂସ୍କୃତିକ ସ୍ୱତନ୍ତ୍ରତା ରକ୍ଷା କରିବାକୁ ହେବ । ଏହି ଭିତ୍ତି ଉପରେ ଆମ ଦେଶ ପ୍ରତିଷ୍ଠିତ ହେଲେ ତାହା ଯେ କୌଣସି ବୈଦେଶିକ ଆକ୍ରମଣରୁ ଦେଶକୁ ରକ୍ଷା କରାଯାଇପାରିବ । ଜାତୀୟଐକ୍ୟ ପ୍ରତିଷ୍ଠାପାଇଁ ରୋମାନଲିପି ବ୍ୟବହାର କରିବାପାଇଁ ସେ ପରାମର୍ଶ ଦେଇଥିଲେ । ଜାତୀୟ ସରକାର ଯେଉଁ ଯୋଜନା କମିସନ ଗଠନ କରିବେ, ସେମାନେ ଆମ ଦେଶର ବୃହତ ଶିଳ୍ପ, ମଧ୍ୟମ, କ୍ଷୁଦ୍ର ଓ କୁଟୀର ଶିଳ୍ପ ଭିତରେ ଲୋକଙ୍କ ସ୍ୱାର୍ଥ ଦୃଷ୍ଟିରୁ ପରସ୍ପର ଭିତରେ ସମନ୍ୱୟ ରକ୍ଷା କରାଯାଇ ଯେପରି ବିକାଶ ଘଟିବ ସେଥିପ୍ରତି ଦୃଷ୍ଟିରଖି ଯୋଜନା ପ୍ରସ୍ତୁତ କରିବେ ।

ସୁଭାଷଚନ୍ଦ୍ର କଂଗ୍ରେସ ସଭାପତି ଥିବା ସମୟରେ ଦେଶର ୧୧ଟିରୁ ୭ଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠିତ ହୋଇ କାର୍ଯ୍ୟ କରୁଥିଲା । ସେ କଂଗ୍ରେସ ମନ୍ତ୍ରିମଣ୍ଡଳକୁ ପରାମର୍ଶ ଦେଇଥିଲେ ଯେ ସେମାନେ ଅମଲା ତନ୍ତ୍ରର ଗଠନ ଓ ଚରିତ୍ରକୁ ଏପରି ଭାବରେ ପରିବର୍ତ୍ତନ କରିଦେବା ଉଚିତ ଯାହା ଫଳରେ ଆମର ନୀତି ଓ ଆଦର୍ଶ କାର୍ଯ୍ୟକାରୀ ହୋଇପାରିବ । କଂଗ୍ରେସ ନୀତି ଅନୁସରଣରେ ସେମାନେ ଶିକ୍ଷା, ସ୍ୱାସ୍ଥ୍ୟ,

ଜଳସେଚନ, ଭୂସଂସ୍କାର ଓ ନିଶା ନିବାରଣକୁ କାର୍ଯ୍ୟକାରୀ କରିବା ଉଚିତ ।

## କଂଗ୍ରେସ ଦେଶର ଭବିଷ୍ୟତ ନେତାଙ୍କୁ ଗଢିବ

ସୁଭାଷଚନ୍ଦ୍ର ତାଙ୍କ ସଭାପତି ଅଭିଭାଷଣରେ ଜାତୀୟ ଆନ୍ତର୍ଜାତୀୟ ପରିସ୍ଥିତି ଆଲୋଚନା କରି ସାରିବା ପରେ କଂଗ୍ରେସ ଦଳର ସଂଗଠନ ସଂପର୍କରେ କେତେକ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଦେଇଥିଲେ । ତାଙ୍କର ପ୍ରଥମ ପ୍ରସ୍ତାବ ଥିଲା ଦେଶର ବିରାଟ ଲୋକ ଶକ୍ତି ସଂଗଠିତ କରି ତାକୁ ଠିକଣା ବାଟରେ ପରିଚାଳିତ କରିବା ପାଇଁ କଂଗ୍ରେସର ଏକ ସୁଶୃଙ୍ଖଳିତ ସ୍ୱେଚ୍ଛାସେବକବାହିନୀ ରହିଥିବା ଆବଶ୍ୟକ । ଦ୍ୱିତୀୟରେ ସ୍ୱାଧୀନତା ପରେ ଆମର ଏକ ଜାତୀୟସେବା ପଦାଧିକାରୀ ରହିଥିବା ଆବଶ୍ୟକ । ଅନ୍ୟ ଭାଷାରେ କହିଲେ କଂଗ୍ରେସ ଦେଶର ଭବିଷ୍ୟତ ନେତାଙ୍କୁ ଗଢିବା ଆବଶ୍ୟକ । ତୃତୀୟରେ ତାଙ୍କ ମତରେ ଦେଶର କୃଷକ ଓ ଶ୍ରମିକ ଅନୁଷ୍ଠାନମାନ ଗଣସଂଗ୍ରାମର ସର୍ବୋଚ୍ଚ ସଂସ୍ଥା କଂଗ୍ରେସର ଆଦର୍ଶ ଓ ପଦ୍ଧତି ଦ୍ୱାରା ଅନୁପ୍ରାଣିତ ହେବା ଆବଶ୍ୟକ ଏବଂ ସେମାନେ ଜାତୀୟ ସ୍ରୋତ ସହିତ ସଂଯୁକ୍ତ ହେବା ବାଞ୍ଛନୀୟ । ଏହା ଫଳରେ ଏକ ବିସ୍ତୃତ ସାମ୍ରାଜ୍ୟବାଦ ବିରୋଧୀ ସାମ୍ମୁଖ୍ୟ ଗଠିତ ହୋଇ ପାରିବ । କଂଗ୍ରେସ ଭିତରେ ରହିଥିବା ବାମପନ୍ଥୀମାନେ ଗୋଟିଏ ଗୋଷ୍ଠୀରେ ସଂଗଠିତ ହୋଇ ସମାଜବାଦୀ ଚିନ୍ତାଧାରାରେ ଅନୁପ୍ରାଣୀତ ହେବା ଉଚିତ । ପଞ୍ଚମରେ କଂଗ୍ରେସ ଏକ ସ୍ୱାଧୀନ ବୈଦେଶିକ ନୀତି ପ୍ରଣୟନ କରିବ ଏବଂ ଏହା ଆନ୍ତର୍ଜାତୀୟ ସଂପର୍କ ପ୍ରତିଷ୍ଠା କରିବ । ଆନ୍ତର୍ଜାତୀୟ ସଂପର୍କ ପ୍ରତିଷ୍ଠା କ୍ଷେତ୍ରରେ ବ୍ୟକ୍ତିଗତ ସଂପର୍କ ଆବଶ୍ୟକ ଏବଂ ବିଦେଶରେ ରହିଥିବା ଭାରତୀୟ ଛାତ୍ରମାନେ ଏଦିଗରେ ସାହାଯ୍ୟ କରିପାରିବେ । ପୃଥିବୀରେ ଭାରତକୁ ପରିଚିତ କରାଇବାକୁ ହେଲେ ସାଂସ୍କୃତିକ ଓ ଶିକ୍ଷା ସଂପର୍କୀୟ ସଂପର୍କ ପ୍ରତିଷ୍ଠିତ ହେବା ଆବଶ୍ୟକ । କଂଗ୍ରେସ ଇଉରୋପ, ଏସିଆ, ଆଫ୍ରିକା ଏବଂ ଉତ୍ତର କେନ୍ଦ୍ର ଓ ଦକ୍ଷିଣ ଆଫ୍ରିକାରେ ତାର ପ୍ରତିନିଧି ନିଯୁକ୍ତ କରିବା ଆବଶ୍ୟକ । ପାରସ୍ୟ, ଆଫଗାନୀସ୍ଥାନ, ନେପାଳ, ଚୀନ, ବର୍ମା, ଶ୍ୟାମ, ମାଳୟ, ଇଷ୍ଟଇଣ୍ଡିଜ ଓ ସିଂହଳ ପ୍ରଭୃତି ପଡୋଶୀ ଦେଶମାନଙ୍କ ସହିତ ଆମର ଘନିଷ୍ଠ ସଂପର୍କ ରହିବା ବାଞ୍ଛନୀୟ ।

## ଭାରତ ମୁକ୍ତ ହେଲେ ମାନବଜାତି ସୁରକ୍ଷିତ ହେବ

ସୁଭାଷ ଚନ୍ଦ୍ର ତାଙ୍କ ସଭାପତି ଭାଷଣର ଶେଷ ଭାଗରେ କହିଥିଲେ ଆମେ କେବଳ ବ୍ରଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ନୁହେଁ ବିଶ୍ୱ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ କରୁଛୁ କିନ୍ତୁ ବ୍ରିଟିଶ ସାମ୍ରାଜ୍ୟ ହେଲା ଚାବିକାଠି । ଆମେ କେବଳ ଭାରତ ପାଇଁ ସଂଗ୍ରାମ ଚଳେଇ ନାହୁଁ । ସମଗ୍ର ମାନବ ଜାତି ପାଇଁ ସଂଗ୍ରାମ ଚଳାଇଛୁ । ଭାରତ ମୁକ୍ତ ହେଲେ ସମଗ୍ର ମାନବଜାତି ରକ୍ଷାପାଇବ ।

## ଜାତୀୟ ସମସ୍ୟା ସମାଧାନ ପାଇଁ ତାଙ୍କର ପଦକ୍ଷେପ

କଂଗ୍ରେସ ସଭାପତି ଭାବରେ ସେ ସମଗ୍ର ଦେଶ ଗସ୍ତ କରିଥିଲେ । ତାଙ୍କ ପ୍ରଚାରର ମୂଳ ଲକ୍ଷ୍ୟ ହେଲା କଂଗ୍ରେସ କୌଣସି ଅବସ୍ଥାରେ ବ୍ରିଟିଶ ସରକାରଙ୍କ ସହିତ ଆପୋଷ ମିଳାମିଶା କରିବ ନାହିଁ ଏବଂ ଇଉରୋପରେ ଯୁଦ୍ଧ ଲାଗିଯିବା ଆସନ୍ନ ହୋଇ ପଡ଼ିଥିବା ବେଳେ ଭାରତରେ ଶେଷ ସ୍ୱାଧୀନତା ସଂଗ୍ରାମ ପାଇଁ ଦେଶର ଜନସାଧାରଣଙ୍କୁ ପ୍ରସ୍ତୁତ କରିବାକୁ ହେବ । ସେ ସମସ୍ତଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖି ସମସ୍ତ ବିଷୟରେ କଂଗ୍ରେସ କାର୍ଯ୍ୟକାରୀ କମିଟି ତଥା ପ୍ରାଦେଶିକ କଂଗ୍ରେସ ଅନୁଷ୍ଠାନରେ ଆଲୋଚନା କରୁଥିଲେ । ମଧ୍ୟପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳର ସଙ୍କଟଜନକ ଅବସ୍ଥାବେଳେ ବିଚକ୍ଷଣତାର ସହିତ ତାର ସମାଧାନ କରିଦେଇଥିଲେ । ଆସାମରେ ବ୍ୟକ୍ତିଗତ ଉଦ୍ୟମ ଫଳରେ ସେଠାରେ ମୁସଲିମ ଲିଗ ମନ୍ତ୍ରିମଣ୍ଡଳ ବଦଳରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ହିନ୍ଦୁ ମୁସଲମାନ ସମସ୍ୟା ସମାଧାନ ପାଇଁ ସୁଭାଷ ଚନ୍ଦ୍ର କଂଗ୍ରେସ ସଭାପତି

ଭାବରେ ବହୁବାର ଜିନ୍ନାଙ୍କ ସହିତ ଆଲୋଚନା କରିଥିଲେ ଏବଂ ଉଭୟଙ୍କ ଭିତରେ ବହୁ ଚିଠିପତ୍ର ଆଦାନପ୍ରଦାନ ହୋଇଥିଲା ମାତ୍ର ଜିନ୍ନା ଭାରତର ମୁସଲମାନମାନଙ୍କର ଏକମାତ୍ର ପ୍ରତିନିଧିମୂଳକ ଅନୁଷ୍ଠାନ ବୋଲି ସ୍ୱୀକାର କରିବା ନିମନ୍ତେ ଜିଦ୍ ଧରିବାରୁ ଏହି ଆଲୋଚନା ବିଫଳ ହୋଇଥିଲା । ତଥାପି ତାଙ୍କର ବିଚକ୍ଷଣ ଆପୋଷ ଆଲୋଚନା ଫଳରେ ବଙ୍ଗଳାରେ ମୁସଲିମ ଲିଗ ସହିତ ଏକାଠି କାର୍ଯ୍ୟ କରିବା ପାଇଁ ଏକ ଚୁକ୍ତି ସଂପାଦନ କରିବାକୁ ସମର୍ଥ ହୋଇଥିଲେ । ଏହା ବୋଷ ଲିଗ ଚୁକ୍ତି ନାମରେ ପରିଚିତ ।

## କଂଗ୍ରେସଦଳ ପକ୍ଷରୁ ଯୋଜନା କମିଟି ଗଠନ କଲେ

ସଭାପତି ଭାବରେ ଦାୟିତ୍ୱ ଗ୍ରହଣ କରିବାର ତିନିମାସ ଭିତରେ ସୁଭାଷଚନ୍ଦ୍ର କଂଗ୍ରେସ ଦଳର ମୁଖ୍ୟମନ୍ତ୍ରୀ ଓ ଶିକ୍ଷମନ୍ତ୍ରୀମାନଙ୍କର ବୈଠକ ଡକାଇ ଭାରତ ଭଳି ଅନୁନ୍ନତ ଦେଶକୁ ଅର୍ଥନୈତିକ ଦୃଷ୍ଟିରୁ ସମୃଦ୍ଧିଶାଳୀ କରିବାକୁ ହେଲେ ଜାତୀୟ ଯୋଜନା ଏକାନ୍ତ ଆବଶ୍ୟକ ବୋଲି ବୁଝାଇଥିଲେ । ୧୯୩୮ ମସିହା ମଧ୍ୟ ଭାଗରେ କଂଗ୍ରେସ ଅନୁଷ୍ଠାନ ଅଧୀନରେ ପଣ୍ଡିତ ଜବାହର ନେହେରୁଙ୍କ ଅଧ୍ୟକ୍ଷତାରେ ସେ ଏକ ଯୋଜନା କମିଟି ଗଠନ କରିବା ପାଇଁ ଘୋଷଣା କଲେ । ୪ଟିଲକ୍ଷ୍ୟ ସାଧନ ପାଇଁ ଏହି ଯୋଜନା କମିଟି ଗଠିତ ହୋଇଥିଲା । ପ୍ରଥମତଃ ଶିଳ୍ପ ଦୃଷ୍ଟିରୁ ଆମର ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ ଆମେ ଆତ୍ମନିର୍ଭରଶୀଳ ହେବୁ, ଦ୍ୱିତୀୟରେ ବିଦ୍ୟୁତ ଶକ୍ତି, ଧାତୁ ଉତ୍ପାଦନ, ଯନ୍ତ୍ର ଓ ଯନ୍ତ୍ରପାତି ଉତ୍ପାଦନ, ପ୍ରଧାନ ରାସାୟନିକ ପଦାର୍ଥ ଉତ୍ପାଦନ, ମୌଳିକ ଶିଳ୍ପର ବିକାଶ, ତୃତୀୟରେ ବୈଷୟିକ ଶିକ୍ଷା ଓ ଗବେଷଣା ପାଇଁ ଦରକାର ହେଲେ ଆମଦେଶର ଛାତ୍ରମାନଙ୍କୁ ବିଦେଶକୁ ପଠାଇବାକୁ ହେବ । ବୈଷୟିକ ଗବେଷଣା ସରକାରୀ ନିୟନ୍ତ୍ରଣରୁ ମୁକ୍ତ ହେବ ଏବଂ ଚତୁର୍ଥରେ ଏକ ସ୍ଥାୟୀ ଗବେଷଣା ପରିଷଦ ଗଠିତ ହେବ । ବିଜ୍ଞାନ ଓ ରାଜନୀତି ଭିତରେ ଘନିଷ୍ଠ ସହଯୋଗ ପ୍ରତିଷ୍ଠିତ ହେବ ।

## ଓଡିଶା ପ୍ରତି ତାଙ୍କର ଶ୍ରଦ୍ଧାର ନିଦର୍ଶନ

୧୯୩୮ ମସିହାରେ ହରିପୁରା କଂଗ୍ରେସ ଅଧିବେଶନରେ ଜାତୀୟ କଂଗ୍ରେସର ସଭାପତି ନିର୍ବାଚିତ ହେବାପରେ ସୁଭାଷଚନ୍ଦ୍ର ବୋଷ ଯେଉଁ ନୂତନ କାର୍ଯ୍ୟକାରୀ କମିଟି ମନୋନୀତ କଲେ ସେଥିରେ ପ୍ରଥମ କରି ଓହିଶାରୁ ଓଡିଶାର ଅନ୍ୟତମ ଜନନାୟକ ଡଃ ହରେକୃଷ୍ଣ ମହତାବଙ୍କୁ ଜଣେ ସଭ୍ୟ ଭାବରେ ମନୋନୀତ କରିଥିଲେ । ଏହା ପୂର୍ବରୁ ଓଡିଶାର କୌଣସି ସଭ୍ୟ କଂଗ୍ରେସର ସର୍ବୋଚ୍ଚ ନୀତି ନିର୍ଦ୍ଧାରକ ଅନୁଷ୍ଠାନ କାର୍ଯ୍ୟକାରୀ କମିଟିକୁ ଓଡିଶାରୁ କୌଣସି ସଭ୍ୟ ମନୋନୀତ ହେଉ ନଥିଲେ । କାର୍ଯ୍ୟକାରୀ କମିଟିର କେତେକ ବୈଠକକୁ ଜନନାୟକ ଗୋପବନ୍ଧୁ ଚୌଧୁରୀ ଆମନ୍ତ୍ରିତ ହୋଇଯାଇଥିଲେ । ଏହା ସୁଭାଷ ଚନ୍ଦ୍ରଙ୍କର ଓଡିଶା ପ୍ରତି ଶ୍ରଦ୍ଧାର ନିଦର୍ଶନ । ଓଡିଶାର କଂଗ୍ରେସ କର୍ମ କର୍ତ୍ତାଙ୍କ ସହିତ ସେ ସବୁବେଳେ ସଂପର୍କ ରଖି ଆସିଥିଲେ ।

## ଉଚ୍ଚକଂଗ୍ରେସ କର୍ତ୍ତୃପକ୍ଷଙ୍କ ସହିତ ତାଙ୍କର ମତଭେଦ

କଂଗ୍ରେସ ସଭାପତି ଭାବରେ ସୁଭାଷଚନ୍ଦ୍ର ସମଗ୍ର ଦେଶରେ ଗସ୍ତକରି କଂଗ୍ରେସ କର୍ମକର୍ତ୍ତା ଓ କର୍ମୀଙ୍କ ସହିତ ସଂସ୍ପର୍ଶରେ ଆସିବା ପରେ ନେତୃତ୍ୱ ସ୍ତରରେ ତଥା ସାଧାରଣ କର୍ମୀଙ୍କ ସ୍ତରରେ ଭବିଷ୍ୟତ ସ୍ୱାଧୀନତା ସଂଗ୍ରାମ ସଂପର୍କରେ ମତାମତ ଜାଣିବାର ସୁଯୋଗ ପାଇଥିଲେ ଏବଂ ଏଥିରେ ତାଙ୍କର ନୂତନ ଅଭିଜ୍ଞତା ହୋଇଥିଲା । ସେ ଜାଣିପାରିଥିଲେ ଯେ କଂଗ୍ରେସ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ଭିତରେ ଏପରି ବ୍ୟକ୍ତିଅଛନ୍ତି ଯେଉଁମାନେ କି ସଂଗ୍ରାମରେ କ୍ଲାନ୍ତ ହୋଇପଡିଲେଣି, ସେମାନେ କଂଗ୍ରେସ ମନ୍ତ୍ରିମଣ୍ଡଳରୁ ଓହରିଯିବାକୁ ଚାହାନ୍ତି ନାହିଁ । ସେମାନେ ବ୍ରିଟିଶ ସରକାରଙ୍କ ସହିତ ମିଳାମିଶା କରିଦେବାକୁ ପ୍ରସ୍ତୁତ ଏବଂ ରାଷ୍ଟ୍ରସଂଘୀୟ (Federal) ଶାସନ ପ୍ରସ୍ତାବକୁ ମଧ୍ୟ ଗ୍ରହଣ କରିନେବାକୁ ଚାହିଁବେ । ମାତ୍ର ଠିକଣା ସମୟ ଆସିଲେ ଯେଉଁ ଜାତୀୟବାଦୀ

ବିପ୍ଳବୀମାନେ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆପୋଷ ବିହୀନ ସଂଗ୍ରାମ ଘୋଷଣା କରିବେ ସୁଭାଷଚନ୍ଦ୍ର ସେହିମାନଙ୍କ ଭିତରୁ ଜଣେ ବୋଲି ଭାବୁଥିଲେ । ତାଛଡା ଦେଶରେ ଆଉ ଏକ ରାଜନୈତିକ ଗୋଷ୍ଠୀ ଅଛନ୍ତି ଯେଉଁମାନେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସିଧାସଳଖ ସଂଗ୍ରାମ ନକରି କେବଳ ତାତ୍ତ୍ୱିକ ଓ ଦାର୍ଶନିକ ଆଲୋଚନାରେ ବ୍ୟସ୍ତ । ଏହିଭଳି ଅବସ୍ଥାରେ ଆସନ୍ତାବର୍ଷ ଯେତେବେଳେ କି ଯୁଦ୍ଧ ଆରମ୍ଭ ହୋଇ ଯିବାର ସମ୍ଭାବନା ରହିଛି, ସେହି ସମୟରେ ଜାତୀୟ କଂଗ୍ରେସର ସେ ସଭାପତି ହୋଇ ରହିବା ଉଚିତ ବୋଲି ସେ ମନସ୍ଥ କରିଥିଲେ । ସେ କହିବା ଅନୁଯାୟୀ ସେ ତିନୋଟି କାରଣରୁ ସେ ଜାତୀୟ କଂଗ୍ରେସ କର୍ତ୍ତୃପକ୍ଷଙ୍କ ଗ୍ରହଣ ଯୋଗ୍ୟ ହୋଇପାରି ନଥିଲେ । ପ୍ରଥମତଃ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ କୌଣସି ଆପୋଷ ମିଳାମିଶା କରିବା ବିରୁଦ୍ଧରେ ସେ ଅଭିଯାନ ଚଳେଇ ଥିଲେ । ବ୍ରିଟିଶ ସରକାର ଯେଉଁ ରାଷ୍ଟ୍ର ସଂଘୀୟ ଶାସନ ଭାରତ ଉପରେ ଲଦିଦେବାକୁ ଚାହୁଁଥିଲେ, ସେ ତାକୁ ସିଧାସଳଖ ପ୍ରତ୍ୟାଖ୍ୟାନ କରିବା ସପକ୍ଷରେ ଥିଲେ । ଦ୍ୱିତୀୟରେ ଦେଶର ଶିଳ୍ପ ବିକାଶ ଜାତୀୟ ଯୋଜନା ଅନୁଯାୟୀ ହେବ ବୋଲି ସେ ଯେଉଁମତ ଦେଇଥିଲେ ଦକ୍ଷିଣପନ୍ଥୀମାନେ ତାର ବିରୋଧୀ ଥିଲେ । ତୃତୀୟରେ ଯୁଦ୍ଧ ଆରମ୍ଭ ହୋଇଯିବା ନିଶ୍ଚିତ ଥିବାରୁ ଯୁଦ୍ଧଲାଗିବା ସଙ୍ଗେ ସଙ୍ଗେ ବ୍ରିଟିଶ ଶାସନ ବିରୁଦ୍ଧରେ ଜାତୀୟ ସଂଗ୍ରାମ ଆରମ୍ଭ କରିବା ପାଇଁ ତାଙ୍କର ମତ ଥିଲା ।

ସୁଭାଷଚନ୍ଦ୍ର ଦୃଢ ଭାବରେ ତାଙ୍କର ଯେଉଁ ମତାମତ ଉପସ୍ଥାପିତ କଲେ ସେଥିପ୍ରତି ବିଶେଷ ଜନସମର୍ଥନ ମିଳିଥିଲେ ମଧ୍ୟ ତାକୁ ଦକ୍ଷିଣପନ୍ଥୀ ଜାତୀୟ ନେତୃବର୍ଗ ସମର୍ଥନ କରିନଥିଲେ କାରଣ ତାହା ମନ୍ତ୍ରିମଣ୍ଡଳଙ୍କ କାର୍ଯ୍ୟ ଓ ପାର୍ଲିଆମେଣ୍ଟାରୀ କାର୍ଯ୍ୟରେ ବାଧା ସୃଷ୍ଟି କରିବ ତେଣୁ ସଭାପତି ଭାବରେ ତାଙ୍କ କାର୍ଯ୍ୟକାଳ ଶେଷ ହୋଇ ଆସିଲା ବେଳକୁ କଂଗ୍ରେସ ଦଳର ଦକ୍ଷିଣପନ୍ଥୀ ନେତା ଓ ସୁଭାଷଚନ୍ଦ୍ରଙ୍କ ଭିତରେ ମତଭେଦ ତୀବ୍ର ଆକାର ଧାରଣ କରିଥିଲା।

## ତ୍ରିପୁରୀ କଂଗ୍ରେସ ସଭାପତି ପ୍ରତିଦ୍ୱନ୍ଦିତାରେ ବିଜୟୀ

ସୁଭାଷ ଚନ୍ଦ୍ର କଂଗ୍ରେସ ସଭାପତି ପଦ ପାଇଁ ପ୍ରାର୍ଥୀ ହେବେ ବୋଲି ଘୋଷଣା କରିବା ପରେ ପରେ ସେତେବେଳର ଜାତୀୟ କଂଗ୍ରେସର ଅଧିକାଂଶ ନେତା ଏହାର ବିରୋଧ କରିଥିଲେ । ସେ ମତ ପ୍ରକାଶ କରିଥିଲେ ଯେ କଂଗ୍ରେସ ପରି ଏକ ଗଣତାନ୍ତ୍ରିକ ଗଣ ସଂଗଠନରେ ନୀତି ଓ କାର୍ଯ୍ୟକ୍ରମ ଭିତ୍ତିରେ ସଭାପତି ନିର୍ବାଚିତ ହେବା ଉଚିତ । ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ପରି ଜଣେ ଜାତୀୟ ନେତା କଂଗ୍ରେସ ସଭାପତି ପଦ ପାଇଁ ମନୋନୀତ ହେଲେ ସେ ପ୍ରତିଦ୍ୱନ୍ଦିତାରୁ ଓହରି ଯିବେ ବୋଲି କହିଥିଲେ କିନ୍ତୁ ତା ହେଲା ନାହିଁ ଏବଂ କଂଗ୍ରେସର ଦକ୍ଷିଣପନ୍ଥୀଙ୍କର ଜଣେ ମନୋନୀତ ନେତା ଡଃ ପଟ୍ଟାଭି. ସୀତାରାମାୟା ଗାନ୍ଧୀଙ୍କ ସମର୍ଥନ କ୍ରମେ ସୁଭାଷ ଚନ୍ଦ୍ରଙ୍କ ବିରୁଦ୍ଧରେ କଂଗ୍ରେସ ସଭାପତି ପଦ ପାଇଁ ପ୍ରାର୍ଥୀ ହେଲେ । ପ୍ରତିଦ୍ୱନ୍ଦିତାରେ ସୁଭାଷଚନ୍ଦ୍ର ପ୍ରାୟ ୨୦୦ ଅଧିକା ଭୋଟରେ ବିଜୟୀ ହେଲେ । ତାଙ୍କ ପ୍ରତି ଦେଶର ବିଭିନ୍ନ ଅଞ୍ଚଳରେ ବିପୁଳ ସମର୍ଥନ ଥିବାର ଏହି ନିର୍ବାଚନରୁ ପ୍ରମାଣିତ ହେଲା । ଓଡ଼ିଶାର ସୋସାଲିଷ୍ଟ ଦଳର ପ୍ରତିନିଧିମାନେ ସୁଭାଷ ଚନ୍ଦ୍ରଙ୍କୁ ସମର୍ଥନ କରିଥିଲେ ବୋଲି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ତାଙ୍କ ଆତ୍ମ ଜୀବନୀରେ ଲେଖିଛନ୍ତି । ସେ ପୁଣି ଲେଖିଛନ୍ତି ଯେ କଂଗ୍ରେସ ସଭାପତି ଭାବରେ ସୁଭାଷଚନ୍ଦ୍ର କଲିକତାରୁ ତ୍ରିପୁରୀ କଂଗ୍ରେସ ଅଧିବେଶନକୁ ଟ୍ରେନ୍‌ରେ ଗଲାବେଳେ ଓଡ଼ିଶାର ଜନନାୟକ ନବକୃଷ୍ଣ ଚୌଧୁରୀ ତାଙ୍କ ସହିତ ଯାଇଥିଲେ ।

୧୯୩୯ ଫେବୃଆରୀ ମାସରେ ସେ ମହାତ୍ମାଗାନ୍ଧୀଙ୍କ ସହିତ ୱାର୍ଦ୍ଧାଠାରେ ସାକ୍ଷାତକରି ଆଲୋଚନା କରିଥିଲେ ମାତ୍ର ଆଲୋଚନା ବିଫଳ ହୋଇଥିଲା । ସଭାପତି ନିର୍ବାଚନ ପ୍ରତିଦ୍ୱନ୍ଦିତା ବେଳେ ଗାନ୍ଧିଜୀ ନୀରବ ରହିଥିଲେ ମଧ୍ୟ ନିର୍ବାଚନ ଫଳାଫଳ ଜଣା ପଡିବା ପରେ ଗାନ୍ଧିଜୀ ମତପ୍ରକାଶ କଲେ ଯେ "ଡଃ ପଟ୍ଟାଭିଙ୍କ ପରାଜୟ

ମୋର ପରାଜୟ'' । ପଣ୍ଡିତ ନେହେରୁ ଏହି ଘଟଣାରେ ଦୁଃଖ ପ୍ରକାଶ କରି ନିରପେକ୍ଷ ରହିଥିଲେ ମାତ୍ର ସୁଭାଷଚନ୍ଦ୍ରଙ୍କ ମତରେ ତାଙ୍କର ନିରପେକ୍ଷତା ବିରୋଧ ଭଳି କାର୍ଯ୍ୟ କରିଥିଲା । ଅଧିକାଂଶ କଂଗ୍ରେସ ପକ୍ଷ କଂଗ୍ରେସ କାର୍ଯ୍ୟକାରୀ କମିଟିରୁ ଇସ୍ତଫା ଦେଇଥିଲେ । ତେଣୁ ତାଙ୍କ ଭାଇ ଶରତବୋଷ ସେଠାରେ ତାଙ୍କର ପ୍ରଧାନ ସମର୍ଥକ ଥିଲେ । ସଭାପତି ନିର୍ବାଚିତ ହେବାପରେ ପରେ ସୁଭାଷଚନ୍ଦ୍ର ଗୁରୁତର ଅସୁସ୍ଥ ହୋଇପଡିଲେ । ତାଙ୍କର ଦୁଇପାଖ ଫୁସଫୁସ ନିମୋନିଆରେ ଆକ୍ରାନ୍ତ ହୋଇପଡିଥିଲା ତେଣୁ ଡାକ୍ତରମାନେ କଂଗ୍ରେସ ଅଧିବେଶନରେ ଯୋଗ ନଦେବା ପାଇଁ ତାଙ୍କୁ ପରାମର୍ଶ ଦେଇଥିଲେ ମାତ୍ର ସେ ସେମାନଙ୍କ କଥା ନମାନି ୧୯୩୯ ମାର୍ଚ୍ଚ ମାସ ପ୍ରଥମ ଭାଗରେ ଅନୁଷ୍ଠିତ ତ୍ରିପୁରୀ କଂଗ୍ରେସରେ ଯୋଗ ଦେବାକୁ ଯାଇଥିଲେ । ସେ ତାଙ୍କ ବାସ ଭବନରୁ ଆମ୍ବୁଲାନସ୍ ଗାଡିରେ ଟ୍ରେନକୁ ଯାଇଥିଲେ ଓ ତାଙ୍କ ସାଙ୍ଗରେ ତାଙ୍କ ପରିବାରର ସଭ୍ୟ ଓ ଡାକ୍ତରମାନେ ଯାଇଥିଲେ । ତ୍ରିପୁରୀରେ ପହଞ୍ଚିବା ପରେ ମଧ୍ୟ ଜ୍ୱର କମି ନଥିଲା ତା୍ ସତ୍ତ୍ୱେ ସେ ପେଣ୍ଡାଲ ଉପରେ ଶୋଇ ସଭାପତି କାର୍ଯ୍ୟ ପରିଚାଳନା କରିଥିଲେ ।

## ତ୍ରିପୁରୀ କଂଗ୍ରେସ ଅଧିବେଶନରେ ତାଙ୍କର ଭାଷଣ

କଂଗ୍ରେସର ନିର୍ବାଚିତ ସଭାପତି ସୁଭାଷଚନ୍ଦ୍ର ଅତ୍ୟନ୍ତ ଅସୁସ୍ଥ ହୋଇ ପଡିଥିବାରୁ ନିଜେ ତାଙ୍କ ଅଭିଭାଷଣ ପଢି ପାରିନଥିଲେ । ତାଙ୍କ ଭାଇ ଶରତଚନ୍ଦ୍ର ବୋଷ ତାଙ୍କ ଭାଷା ପଢିଥିଲେ । ଏହି ଭାଷଣରେ ସେ ଆନ୍ତର୍ଜାତୀୟ ପରିସ୍ଥିତି ବିଶ୍ଳେଷଣ କରି କହିଥିଲେ ଯେ ଇଉରୋପ ଓ ଏସିଆରେ ବ୍ରିଟିଶ ଓ ଫ୍ରାନ୍ସର ସାମ୍ରାଜ୍ୟବାଦର ସମ୍ମାନ ଓ ଶକ୍ତି କ୍ଷେତ୍ରରେ ଗୁରୁତର ଅବନତି ଘଟିଛି । ଦେଶର ପରିସ୍ଥିତି ସଂପର୍କରେ ସେ ସ୍ପଷ୍ଟ ଭାବରେ ତାଙ୍କ ମତ ପ୍ରକାଶ କରିଥିଲେ ଯେ ବର୍ତ୍ତମାନ ସମୟ ଆସିଛି ଯେ ଆମେ ଆମର ଯଥାର୍ଥ ଦାବୀ ପୂରଣ ପାଇଁ ଆମର ଜାତୀୟ ଦାବୀ ଏକ ଚରମପତ୍ର ଭାବରେ ବ୍ରିଟିଶ ସରକାରଙ୍କୁ ଦେବା । ଯଦି ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ଆମେ ତାଙ୍କଠାରୁ ସନ୍ତୋଷଜନକ ଉତ୍ତର ନ ପାଉ ତାହେଲେ ଆମ ଜାତୀୟ ଦାବୀ ପୂରଣ ପାଇଁ ଆମେ ସତ୍ୟାଗ୍ରହ ବା ଗଣଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବୁ , ସେ ଦେଶବାସୀଙ୍କୁ ତଥା ତାଙ୍କ ଦଳଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ବ୍ରିଟିଶ ସରକାର ସେତେବେଳେ ସର୍ବଭାରତୀୟ ସ୍ତରରେ ସତ୍ୟାଗ୍ରହ ଭଳି ଗଣ ଆନ୍ଦୋଳନର ସମ୍ମୁଖୀନ ହେବା ଅବସ୍ଥାରେ ନଥିବେ । ଆଶା ପ୍ରକାଶ କରିଥିଲେ ଯେ ବର୍ତ୍ତମାନ ଯାହା ଅବସ୍ଥା ସେଥିରେ ଆମେ ଯଦି ଆମ ଭିତରର ବାଦବିବାଦ ଭୁଲି, ଆମର ସମସ୍ତ ଶକ୍ତି ଠୁଳକରି ବ୍ରିଟିଶ ସାମ୍ରାଜ୍ୟବାଦ ଉପରେ ଆକ୍ରମଣ କରୁ ତାହେଲେ ଏହା ତାଙ୍କ ପକ୍ଷରେ ଅସମ୍ଭାଳ ହୋଇପଡିବ । ଏସଂପର୍କରେ ଭାରତର ଦେଶୀୟ ରାଜ୍ୟମାନଙ୍କରେ ଯେଉଁ ଅଭୂତପୂର୍ବ ଜାଗରଣ ଦେଖା ଦେଇଛି ସେଥିପ୍ରତି କଂଗ୍ରେସ ପ୍ରତିନିଧିମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ସେହିସବୁ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମୀଙ୍କ ସହିତ ଘନିଷ୍ଠ ସଂପର୍କ ସ୍ଥାପନ କରିବା ପାଇଁ ମତପ୍ରକାଶ କରିଥିଲେ । ଶେଷରେ ସ୍ୱରାଜ ହାସଲ ଦିଗରେ ଆଗେଇ ଯିବାପାଇଁ ବିରାଟ ପ୍ରସ୍ତୁତିର ଆବଶ୍ୟକତା ରହିଥିବା ଦର୍ଶାଇଥିଲେ । ଏହା କଲାବେଳେ ଦଳକୁ ସମସ୍ତ ଦୁର୍ନୀତି ଓ ଦୁର୍ବଳତାକୁ ନିର୍ମୂଳ କରିବାକୁ ହେବ ଏବଂ ଶ୍ରମିକ ଓ କୃଷକ ଆନ୍ଦୋଳନ ଭଳି ସାମ୍ରାଜ୍ୟବାଦ ବିରୋଧୀ ଅନୁଷ୍ଠାନ ସହିତ ଘନିଷ୍ଠ ସଂପର୍କ ସ୍ଥାପନ କରିବାକୁ ହେବ ।

ସଭାପତି ସୁଭାଷଚନ୍ଦ୍ରଙ୍କ ମତାମତ ପ୍ରତି କୌଣସି ଗୁରୁତ୍ୱ ଦିଆଗଲା ନାହିଁ । ବାମପନ୍ଥୀ ଦଳମାନେ ଏଥିରେ ନୀରବ ରହିଲେ । ତେଣୁ ତ୍ରିପୁରୀ କଂଗ୍ରେସରେ ଗୃହୀତ ପ୍ରସ୍ତାବ ଅନୁସାରେ କଂଗ୍ରେସ ସଭାପତି ମହାତ୍ମାଗାନ୍ଧୀଙ୍କ ସହିତ ପରାମର୍ଶ କରି ପରବର୍ତ୍ତୀ କାର୍ଯ୍ୟକାରୀ କମିଟିର ସଭ୍ୟ ମନୋନୀତ କରିବେ । ତେଣୁ ଏହା ଶେଷରେ ସାବ୍ୟସ୍ତ ହେଲା ଯେ ମହାତ୍ମାଗାନ୍ଧୀଙ୍କ ଇଚ୍ଛାନୁସାରେ ହିଁ ନିର୍ବାଚିତ ସଭାପତି କାର୍ଯ୍ୟ କରିବେ ।

## ସଭାପତି ପଦରୁ ସୁଭାଷଚନ୍ଦ୍ରଙ୍କ ଇସ୍ତଫା

ତ୍ରିପୁରୀ କଂଗ୍ରେସ ଅଧିବେଶନରେ ସୁଭାଷଚନ୍ଦ୍ର ଯେଉଁ ମାନସିକ ଯନ୍ତ୍ରଣା ଅନୁଭବ କଲେ ସେଥିରେ ତାଙ୍କ ରୋଗ ଆରୋଗ୍ୟ ହେବା କଷ୍ଟକର ହୋଇ ପଡିଲା, ତେଣୁ ତାଙ୍କ ପରିବାରର ଆତ୍ମୀୟମାନେ ଓ ଡାକ୍ତର ତାଙ୍କୁ କଲିକତା ଫେରାଇ ନନେଇ ଧାନବାଦ ନିକଟରେ ଜାମଦେବା ନାମକ ଏକ ଅପେକ୍ଷାକୃତ ନିଭୃତ ସ୍ଥାନକୁ ନେଇ ଯାଇଥିଲେ । ଏ ସଂପର୍କ ପରେ ସେ ଲେଖିଥିଲେ ତ୍ରିପୁରୀର ନୈତିକ ରଗ୍ଣ ପରିବେଶ ଭିତରୁ ମୁଁ ଅତ୍ୟନ୍ତ ବିବ୍ରତ ହୋଇ ଫେରିଯାଇଥିଲି । ଗତ ୧୯ବର୍ଷ ଭିତରେ ମୁଁ ଏପରି ବିବ୍ରତ କେବେ ହୋଇ ନଥିଲି । ମୁଁ ମୋର ଅନ୍ଧକାରମୟ ମନ ଭିତରେ ଆଲୋକ ପାଇଁ ପ୍ରାର୍ଥନା କରିଥିଲି । ତାପରେ ଏକ ଅଭିନବ ଆଲୋକ ମୋ ଆଗରେ ଉଦ୍‌ଭାଷିତ ହେଲା ଓ ମୋର ମାନସିକ ଭାରସାମ୍ୟ ଫେରି ଆସିଲା, ମନୁଷ୍ୟ ଓ ମୋ ଦେଶବାସୀଙ୍କ ଠାରେ ବିଶ୍ୱାସ ପ୍ରକଟିତ ହେଲା । ତ୍ରିପୁରୀତ ଭାରତବର୍ଷ ନୁହେଁ । ତ୍ରିପୁରୀରେ ମୋର ଯେଉଁ ଅଭିଜ୍ଞତା ହୋଇଛି ସେଥିରେ ମନୁଷ୍ୟଠାରେ ମୋର ଯେଉଁ ମୌଳିକ ବିଶ୍ୱାସ ରହିଛି ତାହା ମୁଁ କେମିତି ହରାଇବି ? ମନୁଷ୍ୟ ଠାରେ ବିଶ୍ୱାସ ହରାଇବା ଅର୍ଥ ତାଠାରେ ଯେଉଁ ଆଧ୍ୟାତ୍ମିକ ଶକ୍ତି ରହିଛି ତା ଉପରେ ବିଶ୍ୱାସ ହରାଇବା ଏବଂ ନିଜର ଅସ୍ତିତ୍ୱକୁ ଅବିଶ୍ୱାସ କରିବା ।

ତ୍ରିପୁରୀ କଂଗ୍ରେସ ପ୍ରସ୍ତାବ ଅନୁଯାୟୀ ମହାତ୍ମାଗାନ୍ଧୀଙ୍କ ପରାମର୍ଶ ଅନୁଯାୟୀ କଂଗ୍ରେସ କାର୍ଯ୍ୟକାରୀ କମିଟି ଗଠନ କରିବାକୁ ହେବ । ତେଣୁ ସୁଭାଷ ଚନ୍ଦ୍ର ଜାମଦେବା ଠାରୁ ରୋଗଶଯ୍ୟାରୁ ମହାତ୍ମାଗାନ୍ଧୀଙ୍କ ସହିତ ବହୁ ପତ୍ର ବିନିମୟ କଲେ । ତାଙ୍କ ମତରେ ସେତେବେଳର ଜାତୀୟ ଓ ଆନ୍ତର୍ଜାତୀୟ ପରସ୍ଥିତି ଦୃଷ୍ଟିରୁ କଂଗ୍ରେସ କାର୍ଯ୍ୟକାରୀ କମିଟି ଭିନ୍ନ ମତ ଓ ଭିନ୍ନ ଦୃଷ୍ଟି କୋଣର ବ୍ୟକ୍ତିଙ୍କୁ ନେଇ ଏକ ମିଳିତ କାର୍ଯ୍ୟକାରୀ କମିଟି ଗଠିତ ହେବା ଉଚିତ ମାତ୍ର ଗାନ୍ଧିଜୀଙ୍କ ମତରେ ଏକ ମତାବଲମ୍ବୀ ଲୋକଙ୍କୁ ନେଇ କଂଗ୍ରେସ କାର୍ଯ୍ୟକାରୀ କମିଟି ଗଠନ କରିବାକୁ ହେବ । ଗାନ୍ଧିଜୀ ନିଜ ଇଚ୍ଛାନୁସାରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କୁ ମନୋନୀତ କରିବା ପାଇଁ ମଧ୍ୟ ତାଙ୍କୁ ପରାମର୍ଶ ଦେଇଥିଲେ । ମାତ୍ର ତ୍ରିପରୀ କଂଗ୍ରେସର ପ୍ରସ୍ତାବ ଦୃଷ୍ଟିରୁ ତାହା ସେ କରି ପାରିବେ ନାହିଁ । ସେ ଜାମଦେବାଠାରେ ଥିଲାବେଳେ ପଣ୍ଡିତ ନେହେରୁ ଓ ଡଃ ରାଜେନ୍ଦ୍ର ପ୍ରସାଦ ତାଙ୍କ ନିକଟକୁ ଯାଇ ଏହି ସଙ୍କଟର ସମାଧାନ ନିମନ୍ତେ କଥାବାର୍ତ୍ତା କରିଥିଲେ ମାତ୍ର ଏହାର କୌଣସି ସମାଧାନ ହୋଇ ପାରିଲା ନାହିଁ ।

## ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ନୂତନ ପଥର ସନ୍ଧାନ

୧୯୩୯ ମସିହା ଏପ୍ରିଲ ମାସରେ କଲିକତାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ଅନୁଷ୍ଠିତ ହେଲା । ବୈଠକ ପୂର୍ବରୁ ସୁଭାଷଚନ୍ଦ୍ର ଗାନ୍ଧିଜୀଙ୍କ ସହିତ କଲିକତାର ସୋଦପୁରଠାରେ ଆଲୋଚନା କରିଥିଲେ । ପଣ୍ଡିତ ନେହେରୁ ଓ ଡଃ ରାଜେନ୍ଦ୍ର ପ୍ରସାଦ ଆଲୋଚନାରେ ସାହାଯ୍ୟ କରିଥିଲେ । ଦୁର୍ଭାଗ୍ୟବଶତଃ କୋଣସି ରାଜିନାମା ସମ୍ଭବ ହେଲା ନାହିଁ । ଶେଷରେ ନିଖିଳ ଭାରତ କଂଗ୍ରେସ କମିଟିର ଖୋଲା ଅଧିବେଶନରେ ସୁଭାଷଚନ୍ଦ୍ର କଂଗ୍ରେସ ସଭାପତି ପଦରୁ ତାଙ୍କର ଇସ୍ତଫା ପ୍ରଦାନ କଲେ । ତାଙ୍କ ଶେଷ ଭାଷଣରେ ସୁଭାଷଚନ୍ଦ୍ର କହିଥିଲେ "ତ୍ରିପୁରୀଠାରେ ଗାନ୍ଧିଜୀଙ୍କୁ କ୍ଷମତାପ୍ରଦାନ କରାଯାଇଛି । ସେହି ଅନୁସାରେ ସେ କାର୍ଯ୍ୟକାରୀ କମିଟି ଗଠନ କରନ୍ତୁ । ଆମ ପକ୍ଷରେ ଦୁର୍ଭାଗ୍ୟର କଥା ଯେ ସେ କଂଗ୍ରେସ କାର୍ଯ୍ୟକାରୀ କମିଟି ଗଠନ କରିବା ପାଇଁ ସମର୍ଥ ହେଉ ନାହାନ୍ତି । ତେଣୁ ବହୁ ଭାବିଚିନ୍ତି ସାହାଯ୍ୟ କରିବା ଉଦ୍ଦେଶ୍ୟରେ ମୁଁ ଇସ୍ତଫାପତ୍ର ପ୍ରଦାନ କରୁଛି ।" ଇସ୍ତଫାପତ୍ର ଫଳରେ ସୁଭାଷଚନ୍ଦ୍ରଙ୍କ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟର ଅବସାନ ହେଲା ଓ ଭାରତର ସ୍ୱାଧୀନତା ପାଇଁ ଏକ ନୂତନ ପଥର ସନ୍ଧାନର ଆରମ୍ଭ ହେଲା ।

**ଫରୱାର୍ଡ ବ୍ଲକଗଠନ :**

ତ୍ରିପୁରୀ କଂଗ୍ରେସ ପୂର୍ବରୁ ଓ ପରେ ସୁଭାଷଚନ୍ଦ୍ରଙ୍କ

ହୃଦବୋଧ ହୋଇଥିଲା ଯେ କଂଗ୍ରେସ ଭିତରେ ଏକ ଶୃଙ୍ଖଳିତ ବାମପନ୍ଥୀ ଗୋଷ୍ଠୀ ଗଠନ ଏକାନ୍ତ ଆବଶ୍ୟକ ତେଣୁ ସଭାପତି ପଦରୁ ଇସ୍ତଫା ଦେଇଦେବା ପରେ କଂଗ୍ରେସ ଭିତରେ ଥିବା ପ୍ରଗତିଶୀଳ ଓ ବାମପନ୍ଥୀମାନଙ୍କୁ ନେଇ ସେ ଫରୱାର୍ଡ ବ୍ଲକ ଦଳ ଗଠନ କରିଥିଲେ । ଆନ୍ତର୍ଜାତୀୟ ଯୁଦ୍ଧ ସଙ୍କଟର ପୂର୍ଣ୍ଣ ସୁଯୋଗ ନେବାପାଇଁ ଭାରତ ସବୁବେଳେ ଉଦ୍ୟମ କରିବା ଉଚିତ ବୋଲି ତ୍ରିପୁରୀ କଂଗ୍ରେସ ପୂର୍ବରୁ ତାଙ୍କର ହୃଦବୋଧ ହୋଇଥିଲା । ଫରୱାର୍ଡ ବ୍ଲକ ଗଠନ କରିବାରେ ତାଙ୍କର ଦୁଇଟି ଉଦ୍ଦେଶ୍ୟ ଥିଲା । ପ୍ରଥମତଃ ସେ ତାଙ୍କ ଲକ୍ଷ୍ୟ ସାଧନ ପାଇଁ ସମର୍ଥ ହେବେ ଏବଂ କାଳକ୍ରମେ କଂଗ୍ରେସ ଦଳର ଅଧିକାଂଶ ବ୍ୟକ୍ତିଙ୍କୁ ତାଙ୍କ ମତବାଦ ଆଡକୁ ଟାଣି ଆଣି ପାରିବେ । ଦ୍ୱିତୀୟରେ ତାଙ୍କର ଏହି ଉଦ୍ଦେଶ୍ୟ ଯଦି ସାଧିତ ନହୋଇ ପାରିବ ତାହେଲେ ଗୁରୁତ୍ୱପୂର୍ଣ୍ଣ ସଙ୍କଟବେଳେ ସେ ନିଜ ନିଷ୍ପତ୍ତି ଅନୁସାରେ କାର୍ଯ୍ୟକରି ପାରିବେ । ତାଙ୍କର ହୃଦବୋଧ ହୋଇଥିଲା ଯେ କଂଗ୍ରେସ ଭିତରେ ଯଦି ଗୋଟିଏ ଉଗ୍ରପନ୍ଥୀ ଗୋଷ୍ଠୀ ଗଠନ ପ୍ରତି ଅବହେଳା କରାଯାଏ ବା ଏହାକୁ ସ୍ଥଗିତ ରଖାଯାଏ ତାହେଲେ ଭାରତକୁ ଯୁଦ୍ଧରେ ଭର୍ତ୍ତି କରି ଦିଆଗଲା ବେଳେ ଆମେ ଅସହାୟ ହୋଇ ପଡିବୁ ।

୧୯୩୯ ମସିହା ମଇ ମାସରୁ ସୁଭାଷଚନ୍ଦ୍ରଙ୍କ ନେତୃତ୍ୱରେ ଫରୱାର୍ଡ ବ୍ଲକର ପ୍ରଚାର ଅଭିଯାନ ଚାଲିଲା । ସେହି ବର୍ଷ ଜୁଲାଇ ମାସରେ ସମଗ୍ର ଭାରତରେ ଫରୱାର୍ଡ ବ୍ଲକ ପକ୍ଷରୁ ବିକ୍ଷୋଭ ପ୍ରଦର୍ଶନ କରାଯାଇ କଂଗ୍ରେସ ମନ୍ତ୍ରିମଣ୍ଡଳ ଓ କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ନୀତିକୁ ଖୋଲାଖୋଲି ଭାବରେ ସମାଲୋଚନା କରିବାର ଗଣତାନ୍ତ୍ରିକ ଅଧିକାର ଦାବୀ କରାଯାଇଥିଲା । ନୂତନ କଂଗ୍ରେସ ସଭାପତି ଡଃ ରାଜେନ୍ଦ୍ର ପ୍ରସାଦ ଏପରି ବିକ୍ଷୋଭ ପ୍ରଦର୍ଶନ ନ କରିବା ପାଇଁ ତାଙ୍କୁ ସତର୍କ କରାଇ ଦେଇଥିଲେ ମାତ୍ର ସୁଭାଷଚନ୍ଦ୍ର ସଭାପତିଙ୍କ ଆଦେଶ ମାନିବାକୁ ରାଜିହେଲେ ନାହିଁ ଏବଂ କହିଲେ ଯେ ଏହା ଅଗଣତାନ୍ତ୍ରିକ । ତାପରେ ତାଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ ଶାସ୍ତିବିଧାନ କରାଯାଇ ତିନିବର୍ଷ ପର୍ଯ୍ୟନ୍ତ ସେ କୌଣସି ନିର୍ବାଚିତ ପଦବୀରେ ରହିପାରିବେ ନାହିଁ ବୋଲି ନିର୍ଦ୍ଦେଶ ଦିଆଯାଇଥିଲା । ସୁଭାଷଚନ୍ଦ୍ର ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆପୋଷବିହୀନ ସଂଗ୍ରାମ ଓ ଯୁଦ୍ଧ ପରେ ସମାଜବାଦ ଭିତ୍ତିରେ ଅର୍ଥନୀତି ଗଠନ ସଂପର୍କରେ ସମଗ୍ର ଦେଶରେ ପ୍ରଚାର କରି ଚାଲିଲେ ଏବଂ ଲୋକଙ୍କଠାରୁ ଅଧିକରୁ ଅଧିକ ସହଯୋଗ ଲାଭ କରିଥିଲେ । କିଛିଦିନ ପରେ ମହାତ୍ମାଗାନ୍ଧୀ ନିଜେ ମନ୍ତବ୍ୟ ଦେଇଥିଲେ ଯେ ସୁଭାଷଚନ୍ଦ୍ର କଂଗ୍ରେସରୁ ବିଦାୟ ନେବା ପରେ ଜନସାଧାରଣଙ୍କ ଭିତରେ ତାଙ୍କର ସ୍ଥିତି ଅଧିକ ଦୃଢ ହୋଇଛି ।

## ଦ୍ୱିତୀୟ ମହାଯୁଦ୍ଧ ଘୋଷଣା

୧୯୩୯ ମସିହା ସେପ୍ଟେମ୍ବର ମାସ ୩ ତାରିଖରେ ସୁଭାଷଚନ୍ଦ୍ର ମାନ୍ଦ୍ରାଜ ସମୁଦ୍ର ଉପକୂଳର ଏକ ବିରାଟ ସାଧାରଣ ସଭାରେ ଭାଷଣ ଦେଉଥିବା ବେଳେ ତାଙ୍କୁ ଜଣାଇ ଦିଆଗଲା ଯେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଥିଲା । ସୁଭାଷଚନ୍ଦ୍ର ସାଙ୍ଗେ ସାଙ୍ଗେ କହିଥିଲେ ଯେ ଭାରତପାଇଁ ସୁବର୍ଣ୍ଣ ସୁଯୋଗ ଆସିଗଲା । ଆମେ ସ୍ୱାଧୀନତା ପାଇଁ ଶେଷ ସଂଗ୍ରାମ ଆରମ୍ଭ କରିଦେବା । ଭାରତୀୟ ନେତାମାନଙ୍କ ସହିତ କୌଣସି ପରାମର୍ଶ ନକରି ବଡଲାଟ ଭାରତକୁ ଯୁଦ୍ଧରେ ଭର୍ତ୍ତି କରି ଦେଲେ । ସ୍ୱାଧୀନତା ସଂପର୍କରେ ମତ ଭେଦ ସତ୍ତ୍ୱେ ଭାରତ ଯୁଦ୍ଧରେ ବ୍ରିଟେନକୁ ସାହାଯ୍ୟ କରିବ ବୋଲି ଗାନ୍ଧିଜୀ ମତପ୍ରକାଶ କଲାବେଳେ ବ୍ରିଟେନ ନିଜ ସ୍ୱାର୍ଥ ରକ୍ଷାପାଇଁ କରୁଥିବା ସାମ୍ରାଜ୍ୟବାଦୀ ଯୁଦ୍ଧର ଭାରତ ବିରୋଧ କରିବ ବୋଲି ସୁଭାଷଚନ୍ଦ୍ର କହିଥିଲେ ।

## ବାମପନ୍ଥୀ ମିଳିତ ସାମ୍ମୁଖ୍ୟ ଗଠନ କଲେ

ଫରୱାର୍ଡ ବ୍ଲକ ଗଠନ କରିବା ସଙ୍ଗେ ସଙ୍ଗେ ସୁଭାଷଚନ୍ଦ୍ର ଚିନ୍ତା କରିଥିଲେ ଯେ ଦେଶରେ ସମସ୍ତ ବାମପନ୍ଥୀ ରାଜନୈତିକ ଦଳଙ୍କ ସହଯୋଗ କ୍ରମେ ମିଳିତ ସାମ୍ରାଜ୍ୟବାଦ ବିରୋଧୀ ଅଭିଯାନ ଚଳେଇଲେ ତାହା ଅଧିକ ଫଳପ୍ରଦ ହେବ ତେଣୁ ବିରୋଧୀ ଦଳମାନେ

ସେମାନଙ୍କ ଦଳକୁ ଭାଙ୍ଗିଦେଇ ଏକ ମିଳିତ ସାମ୍ମୁଖ୍ୟ ଗଠନ କରିବା ପାଇଁ ସେ ନିବେଦନ କଲେ ମାତ୍ର ବାମପନ୍ଥୀ ମାନେ ନିଜ ଦଳକୁ ଭାଙ୍ଗିଦେବା ପାଇଁ ରାଜିହେଲେ ନାହିଁ । ଏହି ଅବସ୍ଥାରେ ଫରୱାର୍ଡ ବ୍ଲକ, କଂଗ୍ରେସ ସୋସାଲିଷ୍ଟଦଳ, ଏମ.ଏନ.ରାୟଙ୍କ ରାଡିକାଲ ଡେମୋକ୍ରେଟିକ ଦଳ ଓ କମ୍ୟୁନିଷ୍ଟ ଦଳ ମିଶି ଏକ ବାମପନ୍ଥୀ ମିଳିତ ସାମ୍ମୁଖ୍ୟ ଗଠିତ ହେଲା । ସେମାନେ କଂଗ୍ରେସ ଭିତରେ ଦକ୍ଷିଣ ପନ୍ଥୀଙ୍କ ପ୍ରଭାବକୁ ହ୍ରାସକରି ଦଳ ଭିତରେ ଭାରସାମ୍ୟ ରଖିବା ଉଦ୍ଦେଶ୍ୟରେ କାର୍ଯ୍ୟ କରିବେ ବୋଲି ଆଶା କରାଯାଉ ଥିଲା । ମାତ୍ର ସୁଭାଷ ଚନ୍ଦ୍ରଙ୍କର ଏହି ଉଦ୍ଦେଶ୍ୟ ପୂରଣ ହେଲାନାହିଁ ଏବଂ କାଳକ୍ରମେ ବିଭିନ୍ନ ଦଳ ଭିତରେ ବାଦ ବିବାଦ ଲାଗିଲା । ତେଣୁ ଯୁଦ୍ଧ ବିରୋଧୀ ଅଭିଯାନ ଚଳାଇ ଶୀଘ୍ର ଜାତୀୟ ସଂଗ୍ରାମ ଆରମ୍ଭ କରିବା ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା ଦାୟିତ୍ୱ ଏକୁଟିଆ ଫରୱାର୍ଡ ବ୍ଲକ ଅନୁଷ୍ଠାନ ଉପରେ ପଡିଲା । ମାତ୍ର ସୁଭାଷଚନ୍ଦ୍ର ସେତିକିବେଳୁ ସତର୍କ କରାଇ ଦେଇଥିଲେ ଯେ ଭାରତରେ ନିକଟ ଭବିଷ୍ୟତରେ ଯେଉଁଭଳି ପରିସ୍ଥିତି ଦେଖାଦେବ ସେଥିରେ ବାମପନ୍ଥୀମାନଙ୍କର ଶକ୍ତି ପରିକ୍ଷିତ ହେବ ତେଣୁ ବାମପନ୍ଥୀ ଦଳମାନଙ୍କ ଭିତରେ ବାଦ ବିବାଦ ଦୁଃଖଦାୟକ ।

ଇତି ମଧ୍ୟରେ ୧୯୩୯ ମସିହା ସେପ୍ଟେମ୍ବର ମାସରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ବୈଠକ ଯୁଦ୍ଧ ପ୍ରତି କଂଗ୍ରେସ ଅନୁଷ୍ଠାନର ମତିଗତି ସ୍ଥିର କରିବା ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଲା ଏବଂ ସୁଭାଷ ଚନ୍ଦ୍ରଙ୍କୁ ସେହି ବୈଠକରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରାଯାଇଥିଲା । ସେ ଏହି ବୈଠକରେ ଯୋଗଦେଇ ଭାରତର ସ୍ୱାଧୀନତା ହାସଲ ପାଇଁ କଂଗ୍ରେସ ତୁରନ୍ତ ଶେଷ ସଂଗ୍ରାମ ଆରମ୍ଭ କରି ଦେବାପାଇଁ ପରାମର୍ଶ ଦେଇଥିଲେ ଏବଂ କହିଥିଲେ ଯେ କଂଗ୍ରେସ ଯଦି ଏହି ସଂଗ୍ରାମ ଆରମ୍ଭ ନକରେ ତାହାହେଲେ ଫରୱାର୍ଡ ବ୍ଲକ ଏହି ସଂଗ୍ରାମ ଆରମ୍ଭ କରିବ । କଂଗ୍ରେସ କାର୍ଯ୍ୟକାରୀ କମିଟି ପ୍ରସ୍ତାବରେ ଭାରତବାସୀଙ୍କୁ କ୍ଷମତା ହସ୍ତାନ୍ତର କରିବା ପାଇଁ ବ୍ରିଟିଶ ସରକାରଙ୍କୁ କୁହାଯାଇଥିଲା ଏବଂ ବ୍ରିଟିଶ ସରକାର ଭାରତବାସୀଙ୍କୁ କ୍ଷମତା ହସ୍ତାନ୍ତର ଘୋଷଣା କଲେ କଂଗ୍ରେସ ଅନୁଷ୍ଠାନ ବ୍ରିଟିଶ ସରକାରଙ୍କ ଯୁଦ୍ଧ ଉଦ୍ୟମରେ ସହଯୋଗ କରିବ ବୋଲି ଜଣାଇ ଦିଆଯାଇଥିଲା । ଏହି ପ୍ରସ୍ତାବର ଉତ୍ତରରେ ଭାରତର ବଡଲାଟ ଭାରତକୁ ଔପନିବେଶୀୟ ସ୍ୱାୟତ୍ତ ଶାସନ ପ୍ରଦାନ କରିବେ ବୋଲି ଜଣାଇଦେଲେ । ପରବର୍ତ୍ତୀ ବୈଠକରେ କଂଗ୍ରେସ କାର୍ଯ୍ୟକାରୀ କମିଟି କଂଗ୍ରେସ ମନ୍ତ୍ରିମଣ୍ଡଳଙ୍କୁ ଇସ୍ତଫା ଦେବାକୁ ନିର୍ଦ୍ଦେଶ ଦେଲେ । ପରବର୍ତ୍ତୀ ପଦକ୍ଷେପ ସ୍ୱରୂପ କଂଗ୍ରେସ ଆଇନ ଅମାନ୍ୟ ଆନ୍ଦୋଳନ କରିବ ବୋଲି ସୁଭାଷଚନ୍ଦ୍ର ଆଶା କରିଥିଲେ ମାତ୍ର ତାହେଲା ନାହିଁ ।

## ରାମଗଡଠାରେ ଆପୋଷ ବିରୋଧୀ ସମ୍ମିଳନୀ

ଜତୀୟ କଂଗ୍ରେସର ମତିଗତିରେ ହତାଶ ହୋଇ ସୁଭାଷ ଚନ୍ଦ୍ର ଯୁଦ୍ଧରେ ଭାରତବାସୀ ସହଯୋଗ କରିବା ବିରୁଦ୍ଧରେ ସଂଗ୍ରାମକୁ ତୀବ୍ର ଭାବରେ ଚଳେଇଲେ । ୧୯୩୯ ଅକ୍ଟୋବର ମାସରେ ନାଗପୁରଠାରେ ଏକ ସାମ୍ରାଜ୍ୟବାଦ ବିରୋଧୀ ସମ୍ମିଳନୀ ସେ ସଂଗଠିତ କରିଥିଲେ ଓ ୧୯୪୦ ମସିହା ମାର୍ଚ୍ଚ ମାସରେ ଫରୱାର୍ଡ ବ୍ଲକ ଓ ସ୍ୱାମୀ ସହଜାନନ୍ଦଙ୍କ ନେତୃତ୍ୱରେ ପରିଚାଳିତ କିଶାନସଭା ସହଯୋଗରେ ବିହାରର ରାମଗଡଠାରେ ନିଖିଳ ଭାରତ ଆପୋଷ ବିରୋଧୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେହି ରାମଗଡ ଠାରେ କଂଗ୍ରେସର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଉଥିଲା । ରାମଗଡ ଆପୋଷ ବିରୋଧୀ ସମ୍ମିଳନୀରେ ଭାଷଣ ଦେଇ ସେ କହିଥିଲେ ଯେ ଆମେ ଏ ପର୍ଯ୍ୟନ୍ତ ଯେଉଁ ଯୁଗରେ ରହି ଆସିଛୁ ସେ ଯୁଗର ଯବନିକା ପତନ ହୋଇ ଆସୁଛି, ଆମେ ବର୍ତ୍ତମାନ ଏକ ନୂତନ ଯୁଗରେ ପଦାର୍ପଣ କରିବାକୁ ଯାଉଛୁ । ସାମ୍ରାଜ୍ୟବାଦ ଯୁଗର ଅବସାନ ଘଟିଆସୁଛି ଏବଂ ମୁକ୍ତି ଗଣତନ୍ତ୍ର ଓ ସମାଜବାଦ ଆମ ସମ୍ମୁଖରେ ରହିଛି । ଏହିଭଳି ଶଙ୍କଟ ଜନକ ପରିସ୍ଥିତି ଦେଶର ନେତୃତ୍ୱ ପାଇଁ ଏକ ବିରାଟ ପରୀକ୍ଷାର ବେଳ । ସ୍ୱାଧୀନତା ହାସଲ

ହେଲାପରେ ଆମ ଜାତୀୟ ପୁନର୍ଗଠନର ସମୟ ଆସିବ ଏବଂ ସେତେବେଳେ ଆମ ଆନ୍ଦୋଳନର ସମାଜବାଦୀ ପର୍ଯ୍ୟାୟ ଆରମ୍ଭ ହେବ ।

୧୯୩୯ ମିସହା ଅଗଷ୍ଟ ମାସରେ ସୁଭାଷଚନ୍ଦ୍ର "ଫରୱାର୍ଡ ବ୍ଲକ୍" ନାମରେ ଏକ ସାପ୍ତାହିକ ପତ୍ରିକା ତାଙ୍କ ସଂପାଦନାରେ ପ୍ରକାଶ କଲେ। ପୂର୍ବରୁ ସଂବାଦପତ୍ର ସଂପାଦନାର ଅଭିଜ୍ଞତା ତାଙ୍କର ଥିଲା । ଦକ୍ଷତା ସହ ଓ ଯୁକ୍ତିଯୁକ୍ତ ଭାବରେ ସେ ପ୍ରତି ସପ୍ତାହରେ ନିଜ ନାମ ଦେଇ ସଂପାଦକୀୟ ମାନ ଲେଖି ଚାଲିଥିଲେ । ସେ ଏହି ପତ୍ରିକାରେ ତାଙ୍କ ଗସ୍ତର ଅଭିଜ୍ଞତା ମଧ୍ୟ ପ୍ରକାଶ କରୁଥିଲେ ।

## ଗାନ୍ଧିଜୀଙ୍କ ସହିତ ସୁଭାଷଚନ୍ଦ୍ରଙ୍କ ଶେଷ ସାକ୍ଷାତ

ନାଗପୁର ଫରୱାର୍ଡ ବ୍ଲକ ସମ୍ମିଳନୀ ପରେ ପରେ ସୁଭାଷ ଚନ୍ଦ୍ର କଲିକତା ଫେରିବା ବାଟରେ ସେବା ଗ୍ରାମଠାରେ ମହାତ୍ମାଗାନ୍ଧୀଙ୍କ ସହିତ ସାକ୍ଷାତ କରିଥିଲେ । ଘଟଣାକ୍ରମେ ଗାନ୍ଧିଜୀଙ୍କ ସହିତ ଏହା ଥିଲା ତାଙ୍କ ଶେଷ ସାକ୍ଷାତ । ଶେଷ ସଂଗ୍ରାମ ପାଇଁ ସର୍ବାପେକ୍ଷା ସୁବିଧାଜନକ ସମୟ ଉପସ୍ଥିତ ହୋଇ ଥିବାରୁ ଗାନ୍ଧିଜୀ ଜାତୀୟ ସଂଗ୍ରାମର ନେତୃତ୍ୱ ନିଅନ୍ତୁ ବୋଲି ସେ ତାଙ୍କୁ ନିବେଦନ କରିଥିଲେ। ଗାନ୍ଧିଜୀ ସେଥିରେ ରାଜି ନହୋଇ କହିଥିଲେ ଯେ ସୁଭାଷ ଯେଉଁ ପନ୍ଥା ନିଜେ ପ୍ରଚାର କରୁଛନ୍ତି ସେହି ପନ୍ଥା ଅନୁସରଣ କରି ସେ ଯଦି ଦେଶର ସ୍ୱାଧୀନତା ହାସଲ କରନ୍ତି ତାହେଲେ ସେ ସର୍ବପ୍ରଥମେ ତାଙ୍କୁ ଅଭିନନ୍ଦନ ଜଣାଇବେ ।

## କଲିକତାରେ ମହାଜାତି ସଦନ ନିର୍ମାଣ

୧୯୩୭ ମସିହାରେ ସୁଭାଷଚନ୍ଦ୍ର ଖଲାସ ହେବାପରେ ପରେ ବଙ୍ଗଳାର କଂଗ୍ରେସ କର୍ମୀମାନେ "ସୁଭାଷ କଂଗ୍ରେସ ପାଣ୍ଠି" ନାମରେ ଏକ ପାଣ୍ଠି ଗଠନ କରି କଲିକତାରେ ଏକ କଂଗ୍ରେସ ଭବନ ନିର୍ମାଣ କରିବା ପାଇଁ ତାଙ୍କୁ ଦେବା ନିମନ୍ତେ ନିଷ୍ପତ୍ତି କରିଥିଲେ । ପଣ୍ଡିତ ଜବାହର ଲାଲ ନେହେରୁ ଏହି ପାଣ୍ଠି ପାଇଁ ସାହାଯ୍ୟ କରିବାକୁ ନିବେଦନ କରିଥିଲେ। ବର୍ଷକ ପରେ କଲିକତା କର୍ପୋରେସନ ତାଙ୍କ ନାମରେ କଲିକତାରେ ଖଣ୍ଡିଏ ଜମି ପଟ୍ଟା କରି ଦେଇଥିଲେ। ସୁଭାଷ ଏହି ପାଣ୍ଠି ସାହାଯ୍ୟରେ କଲିକତାରେ ଏପରି ଏକ ଭବନ ନିର୍ମାଣ କରିବାକୁ ପରିକଳ୍ପନା ପ୍ରସ୍ତୁତ କରିଥିଲେ ଯାହାକି କେବଳ କଂଗ୍ରେସ ଅନୁଷ୍ଠାନର ସଦର ମହକୁମା ହେବ ତାନୁହେଁ ଏହା ଦେଶ ନିର୍ମାଣର ଅନ୍ୟତମ କେନ୍ଦ୍ର ହେବ । ସେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ନିକଟରେ ଏହି ପରିକଳ୍ପନା ଉପସ୍ଥାପିତ କରିଥିଲେ ଓ ଏହି ଗୃହର ଏକ ନାମ ଦେବାକୁ ଅନୁରୋଧ କରିଥିଲେ। ରବୀନ୍ଦ୍ରନାଥ ସୁଭାଷ ଚନ୍ଦ୍ରଙ୍କ ପ୍ରସ୍ତାବ ଗ୍ରହଣ କରିଥିଲେ ଏବଂ ଏହି ଗୃହର ନାମ ଦେଇଥିଲେ "ମହାଜାତି ସଦନ" । ତାଙ୍କର ଅସୁସ୍ଥତା ସତ୍ୱେ ରବୀନ୍ଦ୍ରନାଥ ସୁଭାଷଚନ୍ଦ୍ରଙ୍କ ନିମନ୍ତ୍ରଣ କ୍ରମେ ଶାନ୍ତିନିକେତନଠାରୁ କଲିକତା ପର୍ଯ୍ୟନ୍ତ ଆସି ୧୯୩୯ ମସିହା ଅଗଷ୍ଟ ମାସରେ ମହାଜାତି ସଦନର ଉଦ୍‌ଘାଟନ କରିଥିଲେ । ଏଥିପାଇଁ ଆୟୋଜିତ ଏକ ବର୍ଣ୍ଣାଢ୍ୟ ଉତ୍ସବରେ ରବୀନ୍ଦ୍ରନାଥ ଓ ସୁଭାଷ ଚନ୍ଦ୍ର ଉଦ୍‌ବୋଧନ ଦେଇ କହିଥିଲେ ଯେ ଭବିଷ୍ୟତରେ ଯେଉଁସବୁ କାର୍ଯ୍ୟାନୁଷ୍ଠାନ ହେବ ତାଫଳରେ ଦେଶର ମନୁଷ୍ୟତ୍ୱ ତଥା ଦେଶ ଗଠନ ବିକାଶ ଲାଭ କରିବ ଏହି ସଦନ ସେହିସବୁ କାର୍ଯ୍ୟକଳାପର ଜୀବନ୍ତ କେନ୍ଦ୍ର ହେବ ।

## ବିଶ୍ୱକବି ରବୀନ୍ଦ୍ରନାଥ ଓ ସୁଭାଷଚନ୍ଦ୍ର

୧୯୩୮ ମସିହା ବିଶେଷ ଭାବରେ ୧୯୩୯ ମସିହା ପ୍ରଥମ ଭାଗରେ କଂଗ୍ରେସ ଅନୁଷ୍ଠାନର ଉଚ୍ଚକର୍ତ୍ତୃପକ୍ଷ ଓ ସୁଭାଷ ଚନ୍ଦ୍ରଙ୍କ ଭିତରେ ଯେଉଁ ତିକ୍ତ ସଂଘର୍ଷ ଚାଲିଥିଲା ରବୀନ୍ଦ୍ରନାଥ ବ୍ୟକ୍ତିଗତ ଭାବରେ ତଥା ଆଦର୍ଶ ଦୃଷ୍ଟିରୁ ସୁଭାଷ ଚନ୍ଦ୍ରଙ୍କୁ ସମର୍ଥନ ଜଣାଇଥିଲେ । ରବୀନ୍ଦ୍ରନାଥ ସୁଭାଷଚନ୍ଦ୍ରଙ୍କୁ ୧୯୩୯ ଜାନୁଆରୀ ମାସରେ ଶାନ୍ତି ନିକେତନଠାରେ ସମ୍ବର୍ଦ୍ଧନା ଜଣାଇଥିଲେ । ସେତେବେଳେ ଯେଉଁ ସଂଘର୍ଷ ଦେଖାଦେଇ ଥିଲା ତା ସତ୍ୱେ ରବୀନ୍ଦ୍ରନାଥ କଲିକତାଠାରେ ସୁଭାଷ ଚନ୍ଦ୍ରଙ୍କୁ ଏକ

ପ୍ରକାଶ୍ୟ ସମ୍ବର୍ଦ୍ଧନାର ଆୟୋଜନ କରି ତାଙ୍କ ମତାମତକୁ ସ୍ପଷ୍ଟ ଭାବରେ ଜଣାଇ ଦେଇଥିଲେ । ସେ କହିଥିଲେ କାରାବରଣ, ନିର୍ବାସନ ଓ ରୋଗ ତୁମ ଶାରୀରିକ ଶକ୍ତିର ଅବକ୍ଷୟ କରି ଦେଇଛି ମାତ୍ର ଏହା ତୁମ ସହାନୁଭୂତିକୁ ବିସ୍ତାରିତ କରିଛି ଏବଂ ଏହା ମୋର ଦୃଷ୍ଟିକୁ କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳ ଭିତରେ ନିବନ୍ଧ ନରଖି ଇତିହାସର ପରପାରକୁ ବିସ୍ତାରୀତ କରିଛି । ମୁଁ ଅନୁଭବ କରୁଛି ଯେ ତୁମେ ତୁମ ମାତୃଭୂମି ପାଇଁ ନୂତନ ଆଲୋକର ସନ୍ଧାନ ଘେନି ଆସିଛ । ଦେଶର ଜନସାଧାରଣଙ୍କ ଦ୍ୱାରା ସ୍ୱୀକୃତ ହୋଇଥିବା ଜଣେ ବ୍ୟକ୍ତିଙ୍କୁ ମୁଁ ଏଠାରେ ସମ୍ବର୍ଦ୍ଧନା ଜଣାଉଛି । ଦେଶବାସୀଙ୍କ ଦୁଃଖ ଓ ବେଦନାର ବୋଝ ସେ ନିଜ ଉପରକୁ ନେଇଛନ୍ତି ଏବଂ ଦେଶର ସ୍ୱାଧୀନତା ଆକାରରେ ଏହାର ପୁରସ୍କାର ତାଙ୍କ ନିକଟକୁ ଶୀଘ୍ର ଆସିବ । ମୁଁ ତାଙ୍କୁ ଆଶୀର୍ବାଦ କରୁଛି ।

## ଓଡ଼ିଶା ସହିତ ନେତାଜୀଙ୍କ ରାଜନୈତିକ ସଂପର୍କ

୧୯୩୯ ମସିହା ଏପ୍ରିଲ ମାସରେ ସୁଭାଷ ଚନ୍ଦ୍ର କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେବାପରେ ନିଖିଳ ଭାରତ ଫରୱାର୍ଡ ବ୍ଲକ ଓ ବାମପନ୍ଥୀ ସାମ୍ମୁଖ୍ୟ ଗଠନ କରି ତାଙ୍କ ଭିନ୍ନ ମତର ପ୍ରଚାରପାଇଁ ସମଗ୍ର ଦେଶ ଭ୍ରମଣ କରିବା ଅବସରରେ ସେ ଅଗଷ୍ଟ ପ୍ରଥମ ଓଡିଶା ଗସ୍ତ କରିଥିଲେ । ସେ ଅଗଷ୍ଟ ୫ ଓ ୬ ତାରିଖ ଦୁଇଦିନ ଧରି କଟକ ପୁରୀ ଓ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁରଠାରେ ବିରାଟ ସଭାମାନଙ୍କରେ ଉଦ୍‌ବୋଧନ ଦେଇଥିଲେ ଏବଂ ସେହି ଭାଷଣରେ ସେ ବ୍ରିଟିଶ ଶାସନକୁ ଏ ଦେଶରୁ ଲୋପ କରିବା ପାଇଁ ଆପୋଷ ବିହୀନ ଶେଷ ସଂଗ୍ରାମ ଚଳେଇବା ପାଇଁ ଆହ୍ୱାନ ଦେଇଥିଲେ । ସେତେବେଳର ପ୍ରଦେଶ କଂଗ୍ରେସ କମିଟି ସଭାପତି ପଣ୍ଡିତ ନୀଳକଣ୍ଠ ଦାସ, ଯଦୁମଣି ମଙ୍ଗରାଜ ଓ ଦିବାକର ପଟ୍ଟନାୟକ ପ୍ରମୁଖ କଂଗ୍ରେସ ନେତାମାନେ ତାଙ୍କୁ ସ୍ୱାଗତ ଜଣାଇ ତାଙ୍କ ସହିତ ଗସ୍ତ କରିଥିଲେ । ଓଡିଶାର ବିରାଟ ଜନତା ତାଙ୍କୁ ସେତେବେଳେ ହାର୍ଦ୍ଦିକ ସଂବର୍ଦ୍ଧନା ଜଣାଇଥିଲେ । ଓଡିଶା ତାଙ୍କର ଜନ୍ମଭୂମି ହୋଇଥିବାରୁ ଦେଶର ଶେଷ ସ୍ୱାଧୀନତା ପାଇଁ ସେ ଯେଉଁ ଆହ୍ୱାନ ଦେଇଛନ୍ତି ସେଥିରେ ଓଡିଶାର ଜନସାଧାରଣ ବିଶେଷ କରି ଯୁବକ ମାନେ ବହୁ ସଂଖ୍ୟାରେ ଯୋଗ ଦେବେ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ନିଖିଳ ଭାରତ ଫରୱାର୍ଡ ବ୍ଲକ ଗଠିତ ହେଲାବେଳେ ନେତାଜୀ ସୁଭାଷ ଚନ୍ଦ୍ର ସେତେବେଳର ବାମପନ୍ଥୀ ଯୁବନେତା ଅଶୋକ ଦାସଙ୍କୁ କାର୍ଯ୍ୟକାରୀ କମିଟିର ସଭ୍ୟ ଭାବରେ ମନୋନୀତ କରିଥିଲେ । ପରେ ୧୯୪୦ ମସିହା ମାର୍ଚ୍ଚମାସରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାମପନ୍ଥୀ ନେତା ଦିବାକର ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଫରୱାର୍ଡ ବ୍ଲକର ଓଡିଶା ଶାଖା ଗଠିତ ହେଲା ଏବଂ ଅଶୋକଦାସ ଏହାର ସାଧାରଣ ସଂପାଦକ ମନୋନୀତ ହୋଇଥିଲେ । ଓଡିଶା ଶାଖାରେ ସେତେବେଳର ବାମପନ୍ଥୀ କଂଗ୍ରେସ ନେତା ବଳରାମ ପଣ୍ଡା, ଜଗନ୍ନାଥମିଶ୍ର ଏବଂ ବାମପନ୍ଥୀ ଯୁବନେତା ବିବୁଧେନ୍ଦ୍ର ମିଶ୍ର, ସୁରାଜମଲ ସାହା, ସତ୍ୟନାରାୟଣ ପଟ୍ଟନାୟକ, ବଳରାମହାନ୍ତି, ହରିହର ପୂଜାପଣ୍ଡା ଓ ପ୍ରହଲାଦ ରାୟ ଅଗରୱାଲା ପ୍ରମୁଖ କାର୍ଯ୍ୟକାରୀ କମିଟିର ସଭ୍ୟଥିଲେ । ସେହି ସମୟରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ପୂର୍ବତନ ସଭାପତି ବାମପନ୍ଥୀ ଯୁବନେତା ବିଜୟ କୁମାର ପାଣି, ଡାଃ ମୋତିଲାଲ ତ୍ରିପାଠୀ, ଉମାପଦ ତ୍ରିପାଠୀ, ଚିତ୍ତ ପାଣି, ବୀରେନ ସରକାର ପ୍ରମୁଖ ନେତାଜୀ ସୁଭାଷଚନ୍ଦ୍ରଙ୍କ ବିଶ୍ୱସ୍ତ ସହଯୋଗୀ ଶୀଳଭଦ୍ର ଯାଜୀଙ୍କ ସହିତ ଓଡିଶା ଓ ବିହାରରେ ନେତାଜୀଙ୍କ ଶେଷ ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥିଲେ । ନେତାଜୀ ଭାରତରୁ ଅନ୍ତର୍ଦ୍ଧାନ ହୋଇଯିବା ପରେ ଜାପାନର କାବୁଲ ଦୂତାବାସ ଜରିଆରେ କଲିକତାକୁ ନେତାଜୀଙ୍କ ନିକଟରୁ ଯେଉଁ ନିର୍ଦ୍ଦେଶ ଆସୁଥିଲା ତାହା ଗୋପନୀୟ ସୂତ୍ରରେ ଓଡିଶାକୁ ଆସୁଥିଲା ତଥା ଓଡିଶା ଉପକୂଳରେ ଖଞ୍ଜାଯାଇଥିବା ବେତାରବାର୍ତ୍ତା ଅନୁସାରେ ଫରୱାର୍ଡର କର୍ମୀମାନେ କାର୍ଯ୍ୟ କରୁଥିଲେ । ୧୯୪୨ ଅଗଷ୍ଟ ବିପ୍ଳବ ବେଳେ

ଏମାନେ ସମସ୍ତେ ଗିରଫ ହୋଇ ଅଟକବନ୍ଦୀ ଭାବରେ ରହିଥିଲେ ।

## ଭାରତରେ ରହି ନେତାଜୀ ଲକ୍ଷ୍ୟ ସାଧନରେ ବିଫଳ ହେଲେ

ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେବା ବହୁ ପୂର୍ବରୁ ନେତାଜୀ ସୁଭାଷ ଚନ୍ଦ୍ର କହି ଆସୁଥିଲେ ଯେ ଭାରତରେ ବ୍ରିଟିଶ ଶାସନ ତଥା ଭାରତ ବାସୀଙ୍କ ସ୍ୱାଧୀନତା ସଂଗ୍ରାମ ଯେମିତିକି ଏକ ସଶସ୍ତ୍ର ଶାସକ ଦୁର୍ଗ ଏବଂ ନୀରସ୍ତ୍ର ବିରୋଧୀ ଜନତାଙ୍କ ପରିବେଷ୍ଟିତ ହୋଇ ରହିଛି । ତାଙ୍କ ମତରେ ଭାରତବାସୀ ଦୁଇଟି ଉପାୟରେ ସ୍ୱାଧୀନତା ହାସଲ କରି ପାରିବେ । ପ୍ରଥମତଃ ସଂପୂର୍ଣ୍ଣ ଅର୍ଥନୈତିକ ଅବରୋଧ ଓ ସଂପୂର୍ଣ୍ଣ ଶାସନ ଦୁର୍ଗର ବର୍ଜନ; ଅନ୍ୟଭାଷାରେ କହିଲେ ସମସ୍ତ କ୍ଷେତ୍ରରେ ଆଇନ ଅମାନ୍ୟ ଓ ସଂପୂର୍ଣ୍ଣ ଅସହଯୋଗ ଦ୍ୱାରା ଦ୍ୱିତୀୟରେ ସଶସ୍ତ୍ର ସଂଗ୍ରାମ ଦ୍ୱାରା ବ୍ରିଟିଶ ଶାସନ ଦୁର୍ଗକୁ ଦଖଲ କରି ଏହି ଲକ୍ଷ୍ୟ ହାସଲ କରାଯାଇ ପାରିବ । ୧୯୩୯ ମସିହାରେ ଯେତେବେଳେ ସେ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେବାକୁ ବାଧ୍ୟ ହେଲେ ସେତେବେଳେ ସେ ଜାଣିଥିଲେ ଯେ କଂଗ୍ରେସର ଦକ୍ଷିଣପନ୍ଥୀ ନେତୃବର୍ଗ ବ୍ରିଟିଶ ଶାସନ ବିରୁଦ୍ଧରେ ଗଣ ସଂଗ୍ରାମ ଆରମ୍ଭ କରିବାକୁ ରାଜି ନୁହନ୍ତି, ଏଣେ ବାମପନ୍ଥୀମାନଙ୍କୁ ଏକଜୁଟ କରି କୌଣସି ଗଣ ବାମପନ୍ଥୀ ନେତା ଦୃଢ଼ ଭାବରେ ପ୍ରଚାର କରୁଛନ୍ତି ମାତ୍ର ବ୍ରିଟିଶ ଶାସନ ବିରୁଦ୍ଧରେ ଆପୋଷ ବିହୀନ ସଂଗ୍ରାମ ଚଳେଇବାକୁ ପ୍ରସ୍ତୁତ ନୁହନ୍ତି । ବ୍ରିଟିଶ ସରକାର ଏହିଭଳି ପରିସ୍ଥିତିର ପୂର୍ଣ୍ଣ ସୁଯୋଗ ନେଉଛନ୍ତି ଏବଂ ମୁସଲିମ ଲିଗ ଓ ହିନ୍ଦୁ ମହାସଭା ଭଳି ସାମ୍ପ୍ରଦାୟିକ ଦଳମାନେ ବିଦେଶୀ କବଳରୁ ଦେଶକୁ ମୁକ୍ତ କରିବା କଥା ଛାଡି ସାମ୍ପ୍ରଦାୟିକ ଓ ବିଚ୍ଛିନ୍ନତାବାଦୀ ଦାବୀମାନ ଉଠାଉଛନ୍ତି । ଏହିଭଳି ପରିସ୍ଥିତିରେ ଦେଶରେ ରହି ଲକ୍ଷ୍ୟ ହାସଲ କରିବାର ସମ୍ଭାବନା ନ ଦେଖି ଭାରତ ବାହାରେ ଥାଇ ସଶସ୍ତ୍ର ଆକ୍ରମଣ ପାଇଁ ଉଦ୍ୟମ କରିବା ପାଇଁ ସୁଭାଷଚନ୍ଦ୍ର ଚିନ୍ତା କରିଥିଲେ ।

୧୯୩୯ ମସିହା ପ୍ରଥମ ଭାଗରେ ଚୀନ ଦେଶକୁ ଯିବାପାଇଁ ସେ ଚାହିଁଥିଲେ ମାତ୍ର ବ୍ରିଟିଶ ସରକାର ସେଥିପାଇଁ ତାଙ୍କୁ ପାଶପୋର୍ଟ ଦେବାକୁ ମନା କରିଦେଇଥିଲେ । ସେତେବେଳର ଚୁକିଙ୍ଗ ସରକାର ମଧ୍ୟ ଚୀନରେ ଆଶ୍ରୟ ଦେବାକୁ ଚାହୁଁନଥିଲେ । ଭାରତ ଚୀନ ଚୁକ୍ତି ଦୃଷ୍ଟିରୁ ଏହା ଠିକ୍ ହେବନାହିଁ ବୋଲି ସେମାନେ ଭାବୁଥିଲେ । ୧୯୪୦ ମସିହା ପ୍ରଥମ ଭାଗରେ ସେ ଭାରତରୁ ଗୋପନରେ ସୋଭିଏତ୍ ଓ ଇଉରୋପ ଆଡେ ଚାଲି ଯିବାର ସମ୍ଭାବନା ରହିଥିବା କଥା ବଙ୍ଗଳା ଓ ପଂଜାବର ତାଙ୍କର କେତେକ ଘନିଷ୍ଠ ବନ୍ଧୁଙ୍କୁ ଜଣାଇ ଦେଇଥିଲେ ।

## ହଲଓୟେଲ୍ ଆନ୍ଦୋଳନରେ କାରାବରଣ

କଲିକତାରୁ ହଲଓୟେଲ ସ୍ମୃତି ସ୍ତମ୍ଭ ଉଠେଇ ଦେବାପାଇଁ ନିଜେ ସୁଭାଷଚନ୍ଦ୍ର ଆଇନ ଅମାନ୍ୟ ଆନ୍ଦୋଳନ ସଂଗଠନ କରିଥିଲେ । ବଙ୍ଗଳାର ଶେଷ ସ୍ୱାଧୀନ ଶାସକ ସିରାଜଉଦ୍‌ଦୌଲାଙ୍କ ପ୍ରତି ଏକ ଲଜ୍ଜା ଓ ଅପମାନର ସ୍ମୃତିରୂପେ ଏହି ହଲ୍‌ଓୟେଲ ସ୍ମୃତି ସ୍ତମ୍ଭ ଦଣ୍ଡାୟମାନ ରହିଥିଲା । ହିନ୍ଦୁ ଓ ମୁସଲମାନ ଉଭୟ ସଂପ୍ରଦାୟର ଲୋକେ ଏହି ଆନ୍ଦୋଳନରେ ଯୋଗଦେଇଥିଲେ । ୧୯୪୦ ମସିହା ଜୁଲାଇ ମାସ ପ୍ରଥମ ସପ୍ତାହରେ ସୁଭାଷ ଚନ୍ଦ୍ର ନିଜେ ଦଳେ ସ୍ୱେଚ୍ଛାସେବକଙ୍କ ନେତୃତ୍ୱନେଇ ଆଇନ ଅମାନ୍ୟ ଆରମ୍ଭ କରିବେ ବୋଲି ସ୍ଥିର କରାଯାଇଥିଲା ମାତ୍ର ତା ପୂର୍ବରୁ ସୁଭାଷ ଚନ୍ଦ୍ରଙ୍କୁ ଗିରଫ କରି ନିଆଯାଇ କଲିକତାର ପ୍ରେସିଡେନ୍‌ସି ଜେଲରେ ରଖି ଦିଆଯାଇଥିଲା । ଏହି ଜେଲରେ ଥିଲାବେଳେ ସେ ଢାକା ନିର୍ବାଚନ ମଣ୍ଡଳୀରୁ କେନ୍ଦ୍ର ବ୍ୟବସ୍ଥା ସଭାକୁ ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇଥିଲେ । ଏହି ଜେଲ ଭିତରେ ରହି ସେ ତାଙ୍କ ଜୀବନର ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କଲେ । ଦ୍ୱିତୀୟ ମହାଯୁଦ୍ଧ ଫଳରେ ବ୍ରିଟିଶ ସାମ୍ରାଜ୍ୟ ଭାଙ୍ଗି ପଡିବ ବୋଲି ସେ ଅନୁମାନ କରିପାରିଥିଲେ ମାତ୍ର ବିନା ସଂଗ୍ରାମରେ ସେମାନେ ଭାରତବାସୀଙ୍କୁ କ୍ଷମତା ହସ୍ତାନ୍ତର କରିବେ

ନାହିଁ । ଯୁଦ୍ଧ ସଙ୍କଟ ଭିତରେ ଭାରତ ଆନ୍ତର୍ଜାତୀୟ ରାଜନୀତି କ୍ଷେତ୍ରରେ ସକ୍ରୀୟ ଭାବରେ ପ୍ରବେଶ ନ କଲେ ସ୍ୱାଧୀନତା ହାସଲ ସମ୍ଭବ ନୁହେଁ ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା । ବିଶ୍ୱରେ ନୂତନ ଇତିହାସ ସୃଷ୍ଟି ହେବାକୁ ଯାଉଥିବା ବେଳେ ଜେଲ ଭିତରେ ବନ୍ଦୀ ହୋଇ ରହିବା ତାଙ୍କ ପକ୍ଷରେ ମାରାତ୍ମକ ହେବ ବୋଲି ସେ ଅନୁଭବ କଲେ । ଆଇନ ଅଦାଲତରେ ଆଶ୍ରୟ ନେଇ ଖଲାସ ହେବା ସମ୍ଭବ ନୁହେଁ । ତେଣୁ ତାଙ୍କୁ ଅଟକ ବନ୍ଦୀ ଭାବରେ ରଖିବାର କୌଣସି ଯଥାର୍ଥତା ନଥିବାରୁ ତାଙ୍କୁ ଯଦି ତୁରନ୍ତ ଖଲାସକରି ଦିଆନଯାଏ ତାହେଲେ ସେ ଆମରଣ ଅନଶନ କରିବେ ବୋଲି ବଙ୍ଗଳା ସରକାରଙ୍କୁ ଏକ ଚରମ ପତ୍ର ଦେଲେ ।

## ଗୃହବନ୍ଦୀ ହୋଇ ରହିଲେ

୧୯୪୦ ମସିହା ନଭେମ୍ବର ମାସ ଶେଷରେ ସୁଭାଷଚନ୍ଦ୍ର କାଳୀ ପୂଜାଦିନ ପ୍ରେସିଡେନ୍‌ସି ଜେଲରେ ଅନଶନ ଆରମ୍ଭ କରିଥିଲେ । ପ୍ରଥମେ ବଙ୍ଗଳା ସରକାର ତାଙ୍କ ପ୍ରତି କଠୋର ମନୋଭାବ ପୋଷଣ କରି ତାଙ୍କ ଚରମ ପତ୍ରର ଉତ୍ତର ମଧ୍ୟ ଦେଲେ ନାହିଁ । କେନ୍ଦ୍ର ସରକାର ବଙ୍ଗଳା ସରକାରଙ୍କୁ ଜଣାଇ ଦେଲେ ଯେ ତାଙ୍କୁ ଜେଲ ଭିତରେ ଅଟକବନ୍ଦୀ କରି ରଖିବାକୁ ହେବ । ବଙ୍ଗଳା ସରକାର ଏକଥା ସୁଭାଷ ଚନ୍ଦ୍ରଙ୍କୁ ଜଣାଇଦେବା ପାଇଁ ତାଙ୍କ ଭାଇ ଶରତବୋଷଙ୍କୁ କହିଦେଲେ । ଯାହାହେଉ ସୁଭାଷ ଚନ୍ଦ୍ର ଏକ ସପ୍ତାହ ପର୍ଯ୍ୟନ୍ତ ସେହି ଜେଲରେ ଅନଶନ କରିବା ପରେ କାଳେ ଜେଲ ଭିତରେ ତାଙ୍କ ମୃତ୍ୟୁ ଘଟିବ ସେଥିପାଇଁ ବଙ୍ଗଳା ସରକାର ଆତଙ୍କିତ ହୋଇ ପଡିଲେ । ତେଣୁ ବଙ୍ଗଳାର ଉଚ୍ଚ ସରକାରୀ ଅଫିସରମାନଙ୍କର ଏକ ଗୋପନୀୟ ବୈଠକରେ ସୁଭାଷଙ୍କୁ ଏହି ଉଦ୍ଦେଶ୍ୟ ରଖି ଖଲାସ କରିଦେବାକୁ ନିଷ୍ପତ୍ତି କଲେ ଯେ ତାଙ୍କ ସ୍ୱାସ୍ଥ୍ୟର ଉନ୍ନତି ଘଟିଲେ ତାଙ୍କୁ ପୁଣି ଗିରଫ କରାଯିବ । କେନ୍ଦ୍ର ସରକାର ଏଥିରେ ଘୋର ଆପତ୍ତି କଲେ । ମାତ୍ର ବଙ୍ଗଳା ସରକାର ତାଙ୍କୁ ଜଣାଇଦେଲେ ଯେ ସେମାନେ ତାଙ୍କ ପ୍ରତି ଏକ କୌଶଳ ପ୍ରୟୋଗ କରି ଏହା କରୁଛନ୍ତି । ଏଥିରେ ଆଶଙ୍କାର କୌଣସି କାରଣ ନାହିଁ ।

## ଘରେ ଥାଇ ଅନ୍ତର୍ଦ୍ଧାନ ପାଇଁ ପ୍ରସ୍ତୁତି

ସୁଭାଷ ଚନ୍ଦ୍ର ପ୍ରେସିଡେନସି ଜେଲରୁ ଖଲାସ ହୋଇ ନିଜ ବାସଭବନରେ ରହିବା ପରେ ପରେ ବିଦେଶକୁ ଗୋପନରେ ଚାଲିଯିବା ପାଇଁ ପରିକଳ୍ପନା ପ୍ରସ୍ତୁତି ଆରମ୍ଭ କଲେ । ଏହି ସମୟରେ ମହାତ୍ମାଗାନ୍ଧୀଙ୍କ ନିକଟକୁ ତାଙ୍କର ଶେଷପତ୍ର ଲେଖିଥିଲେ । ଏହି ପତ୍ରରେ ଭାରତର ସ୍ୱାଧୀନତା ହାସଲ ପାଇଁ ସେ ଯେକୌଣସି ଆନ୍ଦୋଳନ ଏମିତିକି ବ୍ୟକ୍ତିଗତ ସତ୍ୟାଗ୍ରହ କଲେ ମଧ୍ୟ ସେ ବିନାସର୍ତ୍ତରେ ତାଙ୍କ ସହିତ ସହଯୋଗ କରିବେ ବୋଲି ଜଣାଇ ଦେଇଥିଲେ । ମହାତ୍ମାଗାନ୍ଧୀ ତାଙ୍କୁ ଉତ୍ତରରେ ଲେଖିଥିଲେ ଯେ ସେମାନଙ୍କ ଭିତରେ ମୌଳିକ ମତଭେଦ ରହିଛି ଏବଂ ସେଥିରେ ଜଣେ ଅନ୍ୟକୁ ତାଙ୍କ ମତରେ ରାଜି ନ କରିବା ପର୍ଯ୍ୟନ୍ତ ସେମାନଙ୍କୁ ନିଜ ନିଜ ବାଟରେ ଚାଲିବାକୁ ହେବ ।

ସୁଭାଷ ଚନ୍ଦ୍ର ଶେଷରେ ନିଜ ବାସ ଭବନରୁ ଗୋପନରେ ଯାଇ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ବାଟ ଦେଇ ଚାଲିଯିବା ପାଇଁ ପରିକଳ୍ପନା କରିଥିଲେ । ଏହି ପରିକଳ୍ପନା ସେ ପ୍ରଥମେ ତାଙ୍କ ପୁତୁରା ଶିଶିର କୁମାର ଘୋଷ ଏବଂ ପେଶାୱାରର ଫରୱାର୍ଡ କର୍ମୀ ମିଆଁ ଆକବର ସାହା ଏହି ଦୁଇଜଣଙ୍କ ଆଗରେ ଫିଟାଇ କହିଥିଲେ । ପୁତୁରା ଶିଶିରଙ୍କ ସାଙ୍ଗରେ ବିସ୍ତୃତ ଭାବରେ ତାଙ୍କ ଅନ୍ତର୍ଦ୍ଧାନର ପରିକଳ୍ପନା ସଂପର୍କରେ ସୁଭାଷଚନ୍ଦ୍ର ଆଲୋଚନା କରି ତାଙ୍କୁ କହିଥିଲେ ଯେ ସେ ତାଙ୍କୁ ରାତିରେ ଘରଠାରୁ ଧାନବାଦ ରେଳଷ୍ଟେସନ ପର୍ଯ୍ୟନ୍ତ କାରରେ ନେଇ ଛାଡି ଦେଇଆସିବେ । ସେ ସେଠାରୁ ଟ୍ରେନ୍‌ରେ ପେଶାୱାର ପର୍ଯ୍ୟନ୍ତ ଯିବେ । ଏ ସଂପର୍କରେ ବହୁ ବିକଳ୍ପ ପନ୍ଥା ଉଭୟଙ୍କ ଭିତରେ ଆଲୋଚନା କରାଯାଇଥିଲା ଏବଂ ଏକ ଅତ୍ୟନ୍ତ ନିରାପଦ ଯୋଜନା ପ୍ରସ୍ତୁତ କରାଗଲା । ତାଙ୍କର ଗୋପନ ଅନ୍ତର୍ଦ୍ଧାନ ବିଷୟରେ ପରିବାର ଭିତରେ

କେବଳ ତାଙ୍କର ଝିଆରୀ ଇଲାକୁ କୁହାଯିବ ବୋଲି ସ୍ଥିର ହେଲା। ଉତ୍ତର ପଶ୍ଚିମ ପ୍ରଦେଶର ଆକବର ସାହାଙ୍କୁ ତାରବାର୍ତ୍ତାରେ ଡକାଇ ଅଣାଯାଇ ସୁଭାଷଚନ୍ଦ୍ର ଯେଉଁ ବେଶପିନ୍ଧି ବାହାରିବେ ସେହି ପୋଷାକ ପୁତୁରା ଶିଶିର ଓ ସେ ଯାଇ ବଜାରରୁ କିଣିକରି ଆଣିବେ ବୋଲି ଗଲେ । ସ୍ଥିର ହେଲା ଯେ ସୁଭାଷ ଚନ୍ଦ୍ର ଜଣେ ପଶ୍ଚିମା ମୁସଲମାନ ପୋଷାକ ପିନ୍ଧି ମହମ୍ମଦ ଜିଆଉଦ୍ଦିନ ଛଦ୍ମନାମରେ ଗୋଟିଏ ଇନ୍‌ସୁରାନସ୍ କମ୍ପାନୀର ଇନସ୍‌ପେକ୍ଟର ଭାବରେ ଭ୍ରମଣ କରିବେ । ତାଙ୍କ ଭାଇ ଶରତ ଚନ୍ଦ୍ର ବୋଷ ସେତେବେଳେ କଲିକତାରେ ନଥିଲେ । ସେ ଫେରିବା ପରେ ଦୁଇଭାଇଙ୍କ ଭିତରେ ଏ ସଂପର୍କରେ ଆଲୋଚନା ହେଲା ଏବଂ ଶରତଚନ୍ଦ୍ରଙ୍କ ପରାମର୍ଶ ମତେ ଏହି ପରିକଳ୍ପନାରେ କେତେକ ଅଦଳ ବଦଳ କରାଯାଇଥିଲା । ଶେଷରେ ନିଜ ବାସଭବନରୁ ଅନ୍ତର୍ଦ୍ଧାନ ହୋଇ ଯିବା ନିର୍ଦ୍ଦିଷ୍ଟ ତାରିଖ ମିଆଁ ଆକବର ସାହାଙ୍କ ସଙ୍ଗେ ଆଲୋଚନାକରି ସ୍ଥିର ହେଲା ଏବଂ ଏହା ଅତ୍ୟନ୍ତ ଗୋପନୀୟ ରଖାଗଲା ।

## ସୁଭାଷ ଚନ୍ଦ୍ରଙ୍କ ଅନ୍ତର୍ଦ୍ଧାନର ରୋମାଞ୍ଚକର କାହାଣୀ

୧୯୪୧ ମସିହା ଜାନୁଆରୀ ୧୬ ତାରିଖ ରାତିରେ ସୁଭାଷ ଚନ୍ଦ୍ର ତାଙ୍କ ବାସଭବନରୁ ଚାଲି ଯିବେ ବୋଲି ସମସ୍ତ ଆନୁଷଙ୍ଗୀକ ସୁବିଧା ଅସୁବିଧା ଆଲୋଚନା ପରେ ନିର୍ଦ୍ଧାରିତ ହେଲା । ଏହି ଦିନଟିକୁ ତାଙ୍କଛଡା ତାଙ୍କ ପୁତୁରା ଶିଶିର ବୋଷ, ଝିଆରୀ ଶ୍ରୀମତୀ ଇଲା ଓ ଭାଇ ଶରତବୋଷ କେବଳ ଜାଣିଲେ । ଅନ୍ୟ ସମସ୍ତଙ୍କଠାରୁ ଏହା ଅତ୍ୟନ୍ତ ଗୋପନୀୟ ରଖାଗଲା । ଦିନଟି ସ୍ଥିର କରିବା ପୂର୍ବରୁ ବଙ୍ଗଳା ସରକାର ତାଙ୍କ ବିଷୟରେ କିପରି ତଥ୍ୟ ସଂଗ୍ରହ କରିଛନ୍ତି ଓ ସରକାରଙ୍କ ଗୁପ୍ତଚର ବିଭାଗରେ ତାଙ୍କ ବିଷୟରେ ଯେଉଁ ସର୍ବଶେଷ ତଥ୍ୟ ରହିଛି ତାହା ସେ ସଂଗ୍ରହ କଲାପରେ ଯାଇ ଦିନ ଧାର୍ଯ୍ୟ କଲେ । ତାଙ୍କ ବିଷୟରେ ଖବର ସଂଗ୍ରହ କରିବା ପାଇଁ ସରକାର ମଧ୍ୟ ତାଙ୍କ ପରିବାର ଭିତରେ ଗୁପ୍ତଚର ରଖାଇ ଥିଲେ ବୋଲି ପରେ ଜଣାଯାଇଥିଲା ମାତ୍ର ସେମାନେ କିଏ ତାହା ଜଣାପଡି ନଥିଲା ଯାହାହେଉ ତାଙ୍କ ଅନ୍ତର୍ଦ୍ଧାନର ଦିନ ଧାର୍ଯ୍ୟ ହୋଇଯିବା ପରେ ସୁଭାଷଚନ୍ଦ୍ର ତାଙ୍କ ପରିବାରର ସମସ୍ତଙ୍କୁ ଜଣାଇଦେଲେ ଯେ ସେଦିଦିନଠାରୁ ସେ କାହାରି ସାଙ୍ଗରେ ଦେଖାକରିବେ ନାହିଁ କି କଥାବାର୍ତ୍ତା କରିବେ ନାହିଁ କିମ୍ବା ଟେଲିଫୋନରେ ମଧ୍ୟ କଥାବାର୍ତ୍ତା କରିବେ ନାହିଁ । ତାଙ୍କ ଘର ଭିତରେ ପର୍ଦ୍ଦା ଝୁଲାଇ ଭାଗ ଭାଗ କରିଦିଆ ହେଲା ଏବଂ ସ୍ଥିର ହେଲା ଯେ ତାଙ୍କ ଝିଆରୀ ଇଲା ତାଙ୍କ ଖାଦ୍ୟ ଜିନିଷ ପର୍ଦ୍ଦା ଭିତରେ ଥୋଇଦେଇ ଆସିବେ ଏବଂ ଅପରଦିନ ଅଇଁଠା ବାସନ ସେଠୁ ଆଣିବେ । ସେ କିଛିଦିନ ଏକୁଟିଆ ରହି ଆଧାତ୍ମିକ ସାଧନା କରିବେ । ସେହି ଘରେ ରହୁଥିବା ତାଙ୍କର ଦୁଇଜଣ ପୁତୁରା ମଧ୍ୟ ଏହି ପ୍ରବଞ୍ଚନା କାର୍ଯ୍ୟରେ ସାହାଯ୍ୟ କରିବେ ବୋଲି ସ୍ଥିର ହୋଇଥିଲା ।

ନିର୍ଦ୍ଧାରିତ ଦିନଟି ଆସିଲା । ସେଦିନ ରାତିରେ ସୁଭାଷଚନ୍ଦ୍ର ତାଙ୍କ ମା ଓ ପରିବାରର ଅନ୍ୟ ଆତ୍ମୀୟଙ୍କ ଉପସ୍ଥିତିରେ ରାତ୍ରୀ ଭୋଜନ କଲେ । ପରିବାରର ସମସ୍ତେ ଶୋଇବାକୁ ଯିବା ପରେ ସେ ଯିବା ପାଇଁ ପ୍ରସ୍ତୁତ ହେଲେ । ସେ ଯିବାବେଳେ ଏକ କଳା ବାଦାମି ରଙ୍ଗର ସେରୱାନି, ଢିଲା ପାଇଜାମା, ଲେସ ଇଉରୋପୀୟାନ ଜୋତା ଓ ଲୋମଯୁକ୍ତ ଟୋପି ପିନ୍ଧିଥିଲେ । ରାତି ୯ଟା ବେଳକୁ ପୁତୁରା ଶିଶିର ଗାଡି ନେଇ ଆସି ପହଞ୍ଚିଲେ - ଏହା ଏକ ଜର୍ମାନ ୱାଣ୍ଡରର ମଟର କାର । ତାଙ୍କ ସାଙ୍ଗରେ ଯାଉଥିବା ଜିନିଷ ଉପରେ ଏମ.ଜେଡ୍ ବୋଲି ଲେଖାଯାଇଥିଲା । କିନ୍ତୁ ତାଙ୍କର ବାହାରୁ ବାହାରୁ ବହୁତ ବିଳମ୍ବ ହେଲା । କାରଣ ସେଦିନ ତାଙ୍କ ପରିବାରର ଦିଜଣ ବ୍ୟକ୍ତି ତାଙ୍କ ଗତିବିଧିରେ ସନ୍ଦେହ କରି ବହୁ ରାତ୍ରୀ ପର୍ଯ୍ୟନ୍ତ ଜେଗିଁ ରହିଥିଲେ ସେମାନେ ଶୋଇବାକୁ ଗଲାପରେ ଜାନୁଆରୀ ୧୭ତାରିଖ ରାତି ସାଢେ ଗୋଟାଏ ବେଳେ ଶିଶିର ତାଙ୍କୁ ଗାଡିରେ ନେଇ ଘରୁ ବାହାରି ଥିଲେ ।

ସୁଭାଷ ଚନ୍ଦ୍ରଙ୍କୁ ନେଇ ପୁତୁରା ବାହାରିଲା ବେଳେ ଗାଡିକୁ ଡାହାଣ ଆଡକୁ ଚଳେଇ ନେଇଥିଲେ । ସାଦା ପୋଷାକରେ ଯେଉଁ ପୋଲିସମାନେ ତାଙ୍କ ଜଗୁଆଳି ରହିଥିଲେ, ସେମାନଙ୍କୁ ବିଭ୍ରାନ୍ତ କରିବାକୁ ସେ ଏହା କରିଥିଲେ । ସେ ଖଲାସ ହୋଇ ନିଜଘରେ ରହିଥିଲେ ମଧ୍ୟ ସାଧା ପୋଷାକରେ ଗୋଇନ୍ଦା ବିଭାଗ ପୋଲିସ କର୍ମଚାରୀମାନେ ତାଙ୍କୁ ଦିନରାତି ଜଗି ରହିଥିଲେ । ମାତ୍ର ତାଙ୍କ ବିଷୟରେ ପୋଲିସ କି ଖବର ରଖୁଛନ୍ତି ଓ କେଉଁ ସୂତ୍ରରୁ ଖବର ନେଉଛନ୍ତି ତାହା ସେ ଆଗରୁ ଜାଣିଥିଲେ । ବାସଭବନରୁ ବାହାରିବା ପରେ ଉଜ୍ଜଳ ଚନ୍ଦ୍ରାଲୋକରେ ତାଙ୍କର ଦୀର୍ଘ ରୋମାଞ୍ଚକର ଯାତ୍ରା ଟ୍ରଙ୍କ ରୋଡରେ ଚାଲିଲା । ୧୯୪୧ ଜାନୁଆରୀ ୧୭ ତାରିଖ ସକାଳ ଆଠଟାବେଳେ ସେମାନେ ଧାନବାଦ ଠାରୁ କିଛି ଦୂରରେ ବରାରି ନାମକ ଗୋଟିଏ ଜାଗାରେ ପହଞ୍ଚିଗଲେ । ଶରତବୋଷଙ୍କ ବଡପୁଅ ଅଶୋକବୋଷ ତାଙ୍କ ପରିବାରଙ୍କ ସହ ସେଠାରେ ରହୁଥିଲେ । ଶିଶିର ତାଙ୍କୁ ସେଠାରେ ଛାଡିଦେଇ ଆଗ ତାଙ୍କ ଭାଇଙ୍କ ବାସ ଭବନକୁ ଏକୁଟିଆ ଗାଡି ନେଇ ଚାଲିଗଲେ ଏବଂ ତାଙ୍କ ଭାଇଙ୍କୁ ଆଗ ଏକଥା କହି ସତର୍କ କରାଇ ଦେଲେ । କିଛି ସମୟପରେ ସୁଭାଷ ଚନ୍ଦ୍ର ସେଠାରେ ଏକୁଟିଆ ଯାଇ ପହଞ୍ଚିଲେ । ସେଠାରେ ଏକ କପଟ ଅଭିନୟ କରାଗଲା । ଶିଶିର ତାଙ୍କୁ ଜୀବନ ବୀମା କମ୍ପାନୀର ଜଣେ ଇନସ୍‌ପେକ୍ଟର ବୋଲି ତାଙ୍କ ଭାଇଙ୍କ ସହିତ ପରିଚୟ କରାଇଦେଲେ । ତାଙ୍କ ପରିବାରର ଚାକର ଓ ଅନ୍ୟମାନଙ୍କୁ ଜଣାଇ ଦେବାପାଇଁ ସେ ଏହା କରିଥିଲେ । ତାଙ୍କ ଅତିଥି ଭବନରେ ସେ ରାତ୍ରୀ ଯାପନ କରିବେ ବୋଲି ସ୍ଥିର ହେଲା । ସବୁକଥା ବାର୍ତ୍ତା ଇଂରେଜୀ ଭାଷାରେ ହୋଇଥିଲା । ଆଗରୁ ସ୍ଥିର ହୋଇଥିବା ପରିକଳ୍ପନା ମତେ ସୁଭାଷଚନ୍ଦ୍ର ସେଠାରୁ ଚାଲି ଚାଲି ଗଲେ ଏକୁଟିଆ ଶିଶିର, ଅଶୋକ ଓ ତାଙ୍କ ସ୍ତ୍ରୀ ଗାଡିନେଇ ଆଗରୁ ଚାଲିଯାଇଥିଲେ । ବାଟରେ ତାଙ୍କୁ ସେମାନେ ନେଇ ଗୋମୋ ଷ୍ଟେସନରେ ଛାଡିଦେଇ ଆସିଲେ । ସୁଭାଷ ଚନ୍ଦ୍ର ସେଠାରେ ନିଜେ ଟିକଟ କିଣିଆଣି କାଲକା-ଦିଲ୍ଲୀ ମେଲରେ ଚାଲିଗଲେ ।

ପୂର୍ବ ପରିକଳ୍ପନା ଅନୁଯାୟୀ ସୁଭାଷ ଚନ୍ଦ୍ର ଫ୍ରଣ୍ଟିୟର ମେଲ ଗାଡିରେ ଦିଲ୍ଲୀଠାରୁ ଯାଇ ଜାନୁଆରୀ ୧୯ ତାରିଖରେ ପେଶାୱାରରେ ପହଞ୍ଚିଲେ । ସେଠାରେ ଅପେକ୍ଷା କରିଥିବା ମିଆଁ ଆକବର ସାହା ଷ୍ଟେସନଠାରୁ ତାଙ୍କୁ ନେଇ ଗୋଟିଏ ଟଙ୍ଗାରେ ଚଢେଇଦେଲେ ଓ ନିଜେ ଆଉ ଗୋଟିଏ ଟଙ୍ଗାରେ ବସି ତାଜମହଲ ହୋଟେଲକୁ ଯାଇଥିଲେ । ପେଶାୱାର ଠାରେ ଆକବର ସାହା ତାଙ୍କର ଜଣେ ବିଶ୍ୱସ୍ତ ବନ୍ଧୁ ଆବାଦ ଖାଁଙ୍କୁ ଭେଟିଲେ । ଆବାଦ ଖାଁଙ୍କର ଏହିପରି ଗୋପନୀୟ ଭ୍ରମଣ ବିଷୟରେ ପୂର୍ବରୁ ବହୁ ଅଭିଜ୍ଞତା ରହିଥିଲା । ତାଙ୍କ ପ୍ରସ୍ତାବ ମତେ ସୁଭାଷଚନ୍ଦ୍ରଙ୍କୁ ହୋଟେଲରୁ ତାଙ୍କ ବାସଭବନକୁ ନିଆଗଲା । ସେଠାରେ ସେ ଛଦିନ କାଳ ଅପେକ୍ଷା କରି ରହିଲେ ।

## ମୂକ ବଧୀର ପଠାଣ ବେଶରେ ସୁଭାଷଚନ୍ଦ୍ର

ପେଶାୱାରଠାରେ ସୁଭାଷଚନ୍ଦ୍ରଙ୍କ ଜୀବନବୀମା ଇନିସ୍‌ପେକ୍ଟର ଛଦ୍ମବେଶ ବଦଳିଲା । ସେ ଏଠାରୁ ଜଣେ ମୂକବଧୀର ପଠାଣ ବେଶରେ ଯାତ୍ରା କରିବେ ବୋଲି ସ୍ଥିର ହେଲା । ଆବାଦ ଖାଁଙ୍କ ଘରେ ରହି ପଠାଣଙ୍କର ସାମାଜିକ ଚଳଣି ଅଭ୍ୟାସ କରି ନେଲେ । ସେ ଯେପରି ଜଣେ ପ୍ରକୃତ ପଠାଣ ବୋଲି ବାରି ହୋଇଯିବେ । ସେ ତାଙ୍କ ପୂର୍ବ ପୋଷାକ ବଦଳାଇ ପଠାଣ ପୋଷାକ ପିନ୍ଧିଲେ, ମୁଣ୍ଡରେ ଦେଲେ ପଠାଣ ଟୋପି । ତାଙ୍କ ସହିତ ଭଗତରାମ ନାମକ ଯୁବକଙ୍କୁ ପଠାଇବା ପାଇଁ ସ୍ଥିର ହେଲା ଆଦିବାସୀ ଅଞ୍ଚଳ ଯାତ୍ରା ଭିତରେ ସେ ତାଙ୍କ ସାଙ୍ଗରେ ରହିଲେ । ସୁଭାଷଚନ୍ଦ୍ର ହେଲେ ତାଙ୍କ ମୂକ ବଧୀର ଭାଇ । ଭଗତ ରାମ ସେଇ ମୂକ ବଧୀର ଭାଇଙ୍କୁ ନେଇ ତୀର୍ଥ ଯାତ୍ରାରେ ଗଲେ । ୧୯୪୧ ମସିହା ଜାନୁଆରୀ ୨୬ ତାରିଖ ଦିନ ସକାଳେ ସୁଭାଷଚନ୍ଦ୍ର ଭଗତ ରାମଙ୍କ ସହିତ ଆଫିଦି ଆଦିବାସୀ ଅଞ୍ଚଳ ଭିତର ଦେଇ ସୀମାନ୍ତ ପର୍ଯ୍ୟନ୍ତ ଯାତ୍ରା କରିଥିଲେ । ତାଙ୍କ ସାଙ୍ଗରେ ମହମ୍ମଦ ସାହା ଓ ଜଣେ ବାଟ ଦେଖାଇଲାବାଲା ଥିଲେ । ଆଫଗାନୀସ୍ଥାନରୁ ଯିବାପାଇଁ ଯେଉଁ ରାସ୍ତା ସ୍ଥିର କରାଯାଇଥିଲା ତାହା ସର୍ବାପେକ୍ଷା

ଅନତିଦୂର ରାସ୍ତା ମାତ୍ର ଏହାଥିଲା ସର୍ବାପେକ୍ଷା କଠିନ ରାସ୍ତା । ଏହି ରାସ୍ତାରେ ସେମାନଙ୍କୁ ତିଖି ପାହାଡ ଅତିକ୍ରମ କରିବାକୁ ହୋଇଥିଲା ଏବଂ ଏହାର କେତେକ ଅଂଶ ବରଫାବୃତ ଥିଲା । ବାଟରେ ସେମାନଙ୍କୁ ଗୋଟିଏ ଛୋଟିଆ ଗାଁରେ ଦୁଇରାତି କଟାଇବାକୁ ହେଲା । ଜାନୁଆରୀ ୨୮ ତାରିଖଦିନ ଅଧରାତି ପରେ ସେମାନେ ଆଫଗାନ ଅଞ୍ଚଳର ପ୍ରଥମ ଗ୍ରାମରେ ପହଞ୍ଚିଲେ । ସୁଭାଷ ଚନ୍ଦ୍ର ଯେପରି ଅଧିକ କ୍ଲାନ୍ତ ହୋଇ ନ ପଡିବେ ସେଥିପାଇଁ ତାଙ୍କୁ ଗୋଟିଏ ଗଧ ଉପରେ ବସି ଯିବାକୁ କୁହାଯାଇଥିଲା । ମାତ୍ର ଗଧଟି ତାଙ୍କୁ ନେଇ ବରଫାବୃତ ଯାଗାରେ ଯାଉଥିବା ବେଳେ ତା ଗୋଡ ଖସିଗଲା ତେଣୁ ସୁଭାଷଚନ୍ଦ୍ର ଗଧ ଉପରୁ ତଳକୁ ଖସି ପଡିଥିଲେ । ଏହିପରି ସେମାନେ ସୀମାନ୍ତ ଅଞ୍ଚଳ ଭିତର ଦେଇଯାଇ ପେଶାଓ୍ୱାର କାବୁଲ ହାଇଓୟେରେ ଅବସ୍ଥିତ ଗାରଦି ଗ୍ରାମରେ ପହଞ୍ଚିଲେ । ଆଫଗାନ ଅଞ୍ଚଳରେ ପହଞ୍ଚିବା ପରେ ଆବାଦଖାଁ ଚାଲିଗଲେ । ତାପରେ ସୁଭାଷ ଚନ୍ଦ୍ର ଭଗତରାମଙ୍କ ସହିତ ଗୋଟିଏ ଚା ବୋଝେଇ ଟ୍ରକରେ ବସି ଜାନୁଆରୀ ୨୯ ତାରିଖରେ ରାତି ୧୦ଟା ବେଳେ ଜଲାଲବାଦରେ ପହଞ୍ଚିଲେ । ସେଠାରେ ପହଞ୍ଚିବା ପରେ ସେ ଗୋଟିଏ ଉପାସନା ମନ୍ଦିର ଆଦାସରିଫକୁ ଯାଇଥିଲେ ।

## ଆଫଗାନ ପୋଲିସ୍‌କୁ ତାଙ୍କ ସୁନାଘଣ୍ଟା ଲାଞ୍ଚଦେଲେ

ଜାନୁଆରୀ ୩୦ ତାରିଖ ଦିନ ସେମାନେ ଟଙ୍ଗାରେ ବସି କାବୁଲ ଅଭିମୁଖେ ଯାତ୍ରା କଲେ । ବାଟରେ କିଛିଦୂର ପର୍ଯ୍ୟନ୍ତ ଗୋଟିଏ ଟ୍ରକରେ ଯାଇ ସେମାନେ ସକାଳେ ବଡଖାକ୍ ଚେକପୋଷ୍ଟରେ ପହଞ୍ଚିଲେ । ସେଠାରୁ ସେମାନେ ଗୋଟିଏ ଟଙ୍ଗାରେ ଯାଇ ଜାନୁଆରୀ ୩୧ ତାରିଖ ଦିନ କାବୁଲରେ ପହଞ୍ଚିଥିଲେ । କାବୁଲରେ ସେ ଦୁଇଜଣ ଯାକ ଥିଲେ ଅଚିହ୍ନା ଲୋକ ସେଠାରେ କାହାରି ସାଙ୍ଗରେ ତାଙ୍କର ପରିଚୟ ନଥିଲା । ସେମାନେ ଲାହୋର ଗେଟଠାରେ ଗୋଟିଏ ସରାଇ ବା ପାନ୍ଥନିବାସ ଖୋଜି ପାଇଲେ । ଏହା ମନୁଷ୍ୟ ବାସୋପଯୋଗୀ ସ୍ଥାନ ନଥିଲା ମାତ୍ର ତାଙ୍କରତ ଆଉ ଉପାୟ ନଥିଲା । ସେଠାରେ ରହି ପାଉଁରୁଟିକୁ ମିଠା ଚାହାରେ ବୁଡାଇ ଖାଇଥିଲେ । ବ୍ରିଟିଶ ପୋଲିସଙ୍କ କବଳରୁ ରକ୍ଷା ପାଇଥିଲେ ମଧ୍ୟ ସେ ଦେଖିଲେ ଯେ ତାଙ୍କ ଅଗ୍ନି ପରୀକ୍ଷା ଶେଷ ହୋଇନାହିଁ । ବରଂ ଆରମ୍ଭ ହେଲାଭଳି ତାଙ୍କୁ ଜଣାଗଲା । ସେଠାରେ ଦୀର୍ଘ୪୫ ଦିନକାଳ ଏକ ସଂପୂର୍ଣ୍ଣ ଅଚିହ୍ନା ଓ ପ୍ରତିକୂଳ ପରିବେଶ ଭିତରେ ଆଫଗାନ ପୋଲିସ ଓ ବ୍ରିଟିଶ ଗୁପ୍ତଚରଙ୍କ ଦ୍ୱାରା ଧରା ପଡିଯିବା ଆଶଙ୍କା ଭିତରେ ତାଙ୍କୁ ରହିବାକୁ ହେଲା ଲାହୋର ଗେଟ୍‌ଠାରେ ସୁଭାଷଚନ୍ଦ୍ର ମୂକ-ବଧୀର ଭଳି ଅଭିନୟ କରିଥିଲେ ମଧ୍ୟ ଜଣେ ଆଫଗାନ ପୋଲିସ ତାଙ୍କୁ ସନ୍ଦେହ କରି ସବୁବେଳେ ତାଙ୍କ ପାଖକୁ ଯିବା ଆସିବା କଲା । ସେ ତାଙ୍କୁ ନିଜ ସୁନାଘଣ୍ଟାଟି କାଢିଦେଲେ ମଧ୍ୟ ସେଥିରେ ସନ୍ତୁଷ୍ଟ ନ ହୋଇ ତାଙ୍କୁ ପୋଲିସ ଥାନାକୁ ନେଇ ଯିବାପାଇଁ ଜିଦ୍‌ଧରି ଥିଲେ ।

## ରୁଷ ସରକାରଙ୍କ ସହିତ ସଂପର୍କ ପାଇଁ ଉଦ୍ୟମ

ସୋଭିଏଟ ରୁଷ ଦେଶ ସେ ଯେଉଁଠିଥିଲେ ତଥା ଯେଉଁ କେନ୍ଦ୍ର ଇଉରୋପକୁ ସେ ଯିବାକୁ ଚାହୁଁଥିଲେ ତାରି ମଝିରେ ଅବସ୍ଥିତ । ସେଥିପାଇଁ ପଂଜାବର କୀର୍ତ୍ତିକିଶାନ ପାର୍ଟିର କେତେକ କର୍ମକର୍ତ୍ତାଙ୍କୁ ଆଗରୁ ସେଠାକୁ ପଠାଇଥିଲେ । ସୋଭିଏଟ ରୁଷ ସହିତ ଅସ୍ଥାୟୀ ଭାବରେ କିଛି ବୁଝାମଣା କରିବା ଉଦ୍ଦେଶ୍ୟରେ ସେ ଏହା କରିଥିଲେ ମାତ୍ର ଏଥିରେ କିଛି ଫଳ ହେଲା ନାହିଁ । ପ୍ରକୃତରେ କଅଣ ହେଲା ତାହା ଏ ପର୍ଯ୍ୟନ୍ତ ଅଜ୍ଞାତ ରହିଛି । ଯାହାହେଉ କାବୁଲରେ ଧରା ପଡିବା ଭୟରେ ସେଠାରୁ କୌଣସିମତେ ଚାଲିଯିବାକୁ ସୁଭାଷଚନ୍ଦ୍ର ଉପାୟ ଖୋଜୁଥିଲେ । ଏହା ଭିତରେ ଭଗତରାମ ସୋଭିଏଟ ରୁଷ ସହିତ ସଂପର୍କ ସ୍ଥାପନ କରିବା ପାଇଁ ଯେଉଁ ଉଦ୍ୟମ କରିଥିଲେ ତାହା ମଧ ସଫଳ ହେଲା ନାହିଁ ।

ଫେବୃଆରୀ ୬ ତାରିଖରେ ସୁଭାଷଚନ୍ଦ୍ର ନିଜେ ବ୍ୟସ୍ତ ହୋଇ ଜର୍ମାନୀ ଦୂତାବାସ ଭିତରେ ପଶିଯାଇ ଜର୍ମାନୀ

ରାଷ୍ଟ୍ରଦୂତ ପିଲଜରଙ୍କୁ ସାକ୍ଷାତ କରିଥିଲେ । ପିଲଜର ତାଙ୍କ ସହିତ ବନ୍ଧୁତ୍ୱ ପୂର୍ଣ୍ଣ ବ୍ୟବହାର କରି କଥାବାର୍ତ୍ତା କରିଥିଲେ ମଧ୍ୟ ବର୍ଲିନରୁ ନିର୍ଦ୍ଦେଶ ନ ପାଇବା ପର୍ଯ୍ୟନ୍ତ କୌଣସି କାର୍ଯ୍ୟାନୁଷ୍ଠାନ କରି ପାରିବେ ନାହିଁ ବୋଲି ତାଙ୍କୁ ଜଣେଇ ଦେଇଥିଲେ । କାବୁଲରେ ଥିବା ସାଇମନ୍ସ୍ କମ୍ପାନୀର ଜଣେ ପ୍ରତିନିଧି ସୁଭାଷଚନ୍ଦ୍ର ଓ ଜର୍ମାନୀ ଦୂତାବାସ ଭିତରେ ଯୋଗସୂତ୍ର ରକ୍ଷାକାରୀ ଭାବରେ କାର୍ଯ୍ୟ କରିଥିଲେ । ସୁଭାଷ ଚନ୍ଦ୍ର ଓ ଭଗତରାମ ଅନୁଭବ କରି ଥିଲେ ଯେ ଏହି ସରାଇ (ପାନ୍ଥନିବାସ)ରେ ରହିବା ଅତ୍ୟନ୍ତ ବିପଜ୍ଜନକ । ଏହି ସମୟରେ ପେଶାୱାରରୁ ଆସି ଏଠାରେ ରହି ବ୍ୟବସାୟ କରୁଥିବା ଉତ୍ତମ ଚାନ୍ଦ ମାଲହୋତ୍ରାଙ୍କ ସହିତ ଭଗତରାମଙ୍କ ଦେଖାହେଲା । ସେ ତାଙ୍କର ଜଣେ ପୁରୁଣା ବନ୍ଧୁ । ଏହା ପରେ ଫେବୃଆରୀ ମାସ ମଧ୍ୟଭାଗରେ ସୁଭାଷ ଚନ୍ଦ୍ର ଯାଇ ଉତ୍ତମ ଚାନ୍ଦଙ୍କ ବାସ ଭବନରେ ରହିଲେ । ସେ ଗୋଟିଏ ଘରେ ବନ୍ଦ ହୋଇ ରହିଲାଭଳି ରହିଲେ ଏବଂ ସେଠାରୁ ଅନ୍ୟତ୍ର ବାହାରିଲେ ନାହିଁ । ଏହା ଏକ ବନ୍ଧୁତ୍ୱ ପୂର୍ଣ୍ଣ ଓ ଆରାମ ଦାୟକ ଆଶ୍ରୟସ୍ଥଳ ଥିଲା । ମାତ୍ର କାବୁଲରେ ଦୀର୍ଘକାଳ ଅପେକ୍ଷାକରି ରହିବା ତାଙ୍କ ପକ୍ଷରେ ଅତ୍ୟନ୍ତ ବିରକ୍ତକର ହେଲା । ସେ ହତାଶ ହୋଇ ଆଫଗାନ ରୁଷ ସୀମାନ୍ତରେ ପେଶାୱାରରୁ ଲୁଚି ପଳାଇ ଆସିଥିବା ଜଣେ ବ୍ୟକ୍ତିଙ୍କ ସହିତ ନିଜେ ସୋଭିଏଟ୍‌ରୁଷ ସୀମାନ୍ତ ପାର ହୋଇ ରୁଷରେ ପ୍ରବେଶ କରିବା ପାଇଁ ସ୍ଥିର କରିଥିଲେ ।

ଏହି ସମୟରେ ଫେବୃଆରୀ ୨୩ ତାରିଖରେ ତାଙ୍କ ନିକଟରେ ସାଇମନ୍ସ୍ ଅଫିସରୁ ଖବର ମିଳିଲା ଯେ ଭବିଷ୍ୟତ ବ୍ୟବସ୍ଥା ନିମନ୍ତେ ତାଙ୍କୁ ଇଟାଲିର ମନ୍ତ୍ରୀ ଆଲବର୍ଟୋ କୁରୋନିଙ୍କ ସହିତ ସଂପର୍କ ସ୍ଥାପନ କରିବାକୁ ହେବ । କୁରୋନିଙ୍କ ସହିତ ପ୍ରଥମ ସାକ୍ଷାତ ବେଳେ ସୁଭାଷଚନ୍ଦ୍ର ରାତିସାରା କଥାବାର୍ତ୍ତା କରିଥିଲେ । ତାଙ୍କର ଭବିଷ୍ୟତ ସଂଗ୍ରାମ କୌଶଳ ବିଷୟରେ ସ୍ପଷ୍ଟ ଧାରଣା ରହିଥିଲା । ଇଉରୋପରେ ରହି ଏକ ସ୍ୱାଧୀନ ଭାରତ ସରକାର ପ୍ରତିଷ୍ଠା କରିବା କଥା ସେ କୁରୋନିଙ୍କୁ ଜଣାଇ ଦେଇ କହିଥିଲେ ଯେ ସେ ଇଟାଲି ଓ ଜର୍ମାନୀରେ ରହିଥିବା ଭାରତୀୟ ଯୁଦ୍ଧ ବନ୍ଦୀ ମାନଙ୍କୁ ନେଇ ସେ ଏକ ଭାରତୀୟ ମୁକ୍ତି ବାହିନୀ ଗଠନ କରିବାକୁ ଚାହାନ୍ତି । କୁରୋନି ରୋମକୁ ଏକ ଅନୁକୂଳ ରିପୋର୍ଟ ପଠାଇଲେ । ଏହାପରେ ଉଭୟଙ୍କ ଭିତରେ ପତ୍ରବିନିମୟ ପାଇଁ ଉତ୍ତମ ଚାନ୍ଦଙ୍କ ଦୋକାନ ସହିତ ଯୋଗସୂତ୍ର ରଖିବେ ବୋଲି ବ୍ୟବସ୍ଥା କରାଗଲା ।

## ସୁଭାଷଚନ୍ଦ୍ର ଜର୍ମାନୀରେ ପହଞ୍ଚିଲେ

ଜର୍ମାନୀ ଓ ଇଟାଲି ସରକାର ସୁଭାଷଚନ୍ଦ୍ରଙ୍କ ରୁଷ ଭିତରଦେଇ ଇଉରୋପକୁ ଭ୍ରମଣ କରିବା ବିଷୟ ରୁଷ ସରକାରଙ୍କ ସହିତ କଥାବର୍ତ୍ତା କଲେ । ମସ୍କୋରେ ଗୋପନୀୟ ଭାବରେ କଥାବାର୍ତ୍ତା ଚାଲିଥିଲାବେଳେ ସୁଭାଷଚନ୍ଦ୍ର ଆଫଗାନୀସ୍ଥାନ ଓ ଅନ୍ୟ ଆଦିବାସୀ ବହୁଳ ଅଞ୍ଚଳରେ ତାଙ୍କର ଭବିଷ୍ୟତ କାର୍ଯ୍ୟ ପାଇଁ ବିଭିନ୍ନ ବ୍ୟକ୍ତିଙ୍କ ସହିତ କଥାବାର୍ତ୍ତା ଚଳେଇଥିଲେ । ସୋଭିଏଟ୍ ରୁଷଠାରୁ ଉତ୍ତର ମିଳିବା ପାଇଁ ପ୍ରାୟ ଚାରିସପ୍ତାହ ଲାଗିଯାଇ ଥିଲା । ତିନୋଟି ସରକାରଙ୍କ ଭିତରେ ଶେଷରେ କଥାବାର୍ତ୍ତା ହୋଇ ନିଷ୍ପତ୍ତି କରାଗଲାଯେ ସୁଭାଷଚନ୍ଦ୍ର ଇଟାଲି ଦୂତାବାସର 'ଆର୍ଲାଣ୍ଡୋ ମାଜେଟା' ନାମକ ଜଣେ ଇଟାଲି ଦେଶର ଅଫିସରଙ୍କ ନାମରେ ପାସ୍‌ପୋର୍ଟ ନେଇ ରୁଷ ଭିତରେ ଭ୍ରମଣ କରିବେ । ସେ କାବୁଲ ଛାଡିବାର ପ୍ରାୟ ଏକ ସପ୍ତାହ ପୂର୍ବରୁ ଇଟାଲି ଦୂତାବାସର ଶ୍ରୀମତୀ କୁରୋନି ଉତ୍ତମ ଚାନ୍ଦଙ୍କ ଦୋକାନରେ ଏକ ଗୁରୁତ୍ୱପୂର୍ଣ୍ଣ ବାର୍ତ୍ତା ଦେଇଯାଇଥିଲେ । ସୁଭାଷଚନ୍ଦ୍ରଙ୍କ ମୂଳ ପାସ୍‌ପୋର୍ଟର ଫଟୋଗ୍ରାଫ୍ ପରିବର୍ତ୍ତେ ତାଙ୍କ ଛଦ୍ମନାମ ଆଲାଣ୍ଡୋ ମାଜୋଟା ନାମ ଲେଖି ଦିଆଯାଇଥିଲା । ସୁଭାଷ ଚନ୍ଦ୍ର ଏହାପରେ ମୂକବଧୀର ଛଦ୍ମବେଶ ପରିବର୍ତ୍ତେ ଇଟାଲିୟ ଦୂତାବାସର ଅଫିସର ଅର୍ଲାଣ୍ଡୋ ମାଜୋଟା ଛଦ୍ମବେଶ ଧାରଣ କଲେ । ତାଙ୍କ ବେଶ ପୋଷାକ ସେହି ଅନୁସାରେ ବଦଳିଲା । ମାର୍ଚ୍ଚମାସ ୧୭ ତାରିଖରେ ସୁଭାଷଚନ୍ଦ୍ର ଇଟାଲୀୟ ଦୂତାବାସର କ୍ରେସିନିଙ୍କ ବାସଭବନରେ ଯାଇ ରହିଲେ । ପରଦିନ ସକାଳେ ସେ ଦୁଇଜଣ ଜର୍ମାନୀ

ଅଧିବାସୀଙ୍କ ସହିତ ଗୋଟିଏ କାରରେ ଜର୍ମାନୀ ସୀମାନ୍ତକୁ ଯାତ୍ରା କଲେ। ବାଟରେ ହିନ୍ଦୁକୁଶ ଓ ଆଫଗାନ ପର୍ବତମାଳା ଭିତରେ ସେ ଦୁଇରାତ୍ରୀ ଜଣେ ଜର୍ମାନୀ ଅଧିବାସୀଙ୍କ ଗୃହରେ ରହିଥିଲେ । ସେ ଜର୍ମାନୀ ସୀମାନ୍ତବର୍ତ୍ତୀ ଅଞ୍ଚଳର ଅକସସ୍ ପାର ହୋଇ ସମରକନ୍ଦରେ ଯାଇ ପହଞ୍ଚିଥିଲେ । ସମରକନ୍ଦରୁ ସେମାନେ ମସ୍କୋ ଟ୍ରେନ ଯୋଗେ ଯାଇ ମସ୍କୋଠାରୁ ବିମାନ ଯୋଗେ ଯାତ୍ରାକରି ୧୯୪୧ ଏପ୍ରିଲ ମାସରେ ବର୍ଲିନିରେ ପହଞ୍ଚିଥିଲେ । ମସ୍କୋଠାରେ ଅବସ୍ଥାନ କାଳରେ ସେ ସୋଭିଏଟ୍ ରୁଷର କର୍ତ୍ତୃପକ୍ଷଙ୍କ ସହିତ କି କଥା ବାର୍ତ୍ତା କରିଥିଲେ ତାହା ଜଣାପଡିନଥିଲା ଏବଂ ଶେଷପର୍ଯ୍ୟନ୍ତ ତାହା ଗୋପନୀୟ ରହିଯାଇଥିଲା । ସେ ପାଞ୍ଚ ଛଦିନ ପର୍ଯ୍ୟନ୍ତ ମସ୍କୋରେ ରହିଥିଲେ । ନେତାଜୀ ସୁଭାଷଚନ୍ଦ୍ରଙ୍କର ଏହି ନାଟକୀୟ ରୋମାଞ୍ଚକର ଭ୍ରମଣ କାହାଣୀ ତାଙ୍କ ସହିତ କାବୁଲ ପର୍ଯ୍ୟନ୍ତ ଯାଇଥିବା ଭଗତରାମ ଓ ବର୍ଲିନଠାରୁ ସିଙ୍ଗାପୁର ପର୍ଯ୍ୟନ୍ତ ତାଙ୍କ ସହିତ ରହିଥିବା ଆବିଦହାସାନ ଭାରତରେ ପ୍ରକାଶ କରିଥିଲେ।ଏହି ଐତିହାସିକ ଯାତ୍ରା ୭୬ ଦିନ ଲାଗିଥିଲା ।

## ଓଡିଶା ମିଳିତ ମନ୍ତ୍ରିମଣ୍ଡଳଙ୍କ ସହିତ ସମ୍ପର୍କ

ନେତାଜୀ ସୁଭାଷ ଚନ୍ଦ୍ର ଭାରତରୁ ଅନ୍ତର୍ଦ୍ଧାନ ହୋଇଯିବା ପୂର୍ବରୁ ଭାରତୀୟ ପୂର୍ବ ଉପକୂଳରେ ଭାରତୀୟ ଜାତୀୟ ସୈନ୍ୟ ବାହିନୀଙ୍କ ସହିତ ଓହ୍ଲାଇ ଭାରତରେ ପ୍ରବେଶ କରିବେ ବୋଲି ପରିକଳ୍ପନା କରିଥିଲେ । ସେମାନଙ୍କୁ ସାହାଯ୍ୟ କରିବା ପାଇଁ ପୂର୍ବଉପକୂଳବର୍ତ୍ତୀ ରାଜ୍ୟ ବଙ୍ଗଳା, ଆସାମ ଓ ଓଡିଶାରେ ଫରୱାର୍ଡ ବ୍ଲକ ସମର୍ଥକମାନଙ୍କ ସହଯୋଗରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ ପାଇଁ ନେତାଜୀ ପରାମର୍ଶ ଦେଇଯାଇଥିଲେ । ତାଙ୍କରି ପରାମର୍ଶ ଅନୁସାରେ ଓଡିଶାରେ ଏକ ମିଳିତ ମନ୍ତ୍ରି ମଣ୍ଡଳ ଗଠନ ପାଇଁ ଶରତଚନ୍ଦ୍ର ବୋଷ ଫରୱାର୍ଡ ବ୍ଲକର ସମର୍ଥକ ପଣ୍ଡିତ ନୀଳକଣ୍ଠ ଦାସ ଓ ଯଦୁମଣି ମଙ୍ଗରାଜଙ୍କୁ ଡକାଇ ଆଲୋଚନା କରିଥିଲେ ଓ ସେମାନଙ୍କ ଉଦ୍ୟମରେ କେବଳ ଓଡିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ।

ସେହି ଅନୁସାରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଉଦ୍ୟମରେ ଓଡିଶାରେ ୧୯୪୧ ମସିହାରେ ପାରଳାଖେମୁଣ୍ଡି ମହାରାଜାଙ୍କ ଅଧ୍ୟକ୍ଷତାରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ସେତେବେଳେ ପଣ୍ଡିତ ନୀଳକଣ୍ଠ ଏକଥା ଫିଟାଇ କହି ପାରିନଥିଲେ । ୧୯୫୨ ମସିହା ନିର୍ବାଚନରେ ସେ ଜନ ସଂଘବଳ ଗଠନ କରି ନିର୍ବାଚିତ ହୋଇ ବିରୋଧୀ ଦଳରେ ଥିଲାବେଳେ ଓଡିଶା ବିଧାନ ସଭାରେ ଏହା ପ୍ରକାଶ କରିଥିଲେ ।

ନେତାଜୀ ସୁଭାଷ ଚନ୍ଦ୍ର ଭାରତରୁ ଅଚାନକ ଭାବରେ ଅନ୍ତର୍ଦ୍ଧାନ ହୋଇଯିବା ପରେ ଫରୱାର୍ଡ ବ୍ଲକ ଅନୁଷ୍ଠାନକୁ ବେଆଇନ ଅନୁଷ୍ଠାନ ବୋଲି ଘୋଷଣା କରାଯାଇଥିଲା ଓ ଫରୱାର୍ଡ ବ୍ଲକ କର୍ମୀମାନଙ୍କୁ ଗିରଫ କରି ନିଆଯାଉଥିଲା । ତେଣୁ ସେତେବେଳେ ନେତାଜୀଙ୍କ ଅନୁଗାମୀମାନେ ଭାରତର ବିଭିନ୍ନ ରାଜ୍ୟରେ ଆତ୍ମଗୋପନ କରି ରହି କାର୍ଯ୍ୟକରୁଥିଲେ । ସେତେବେଳକୁ ଓଡିଶାରେ ମିଳିତ ମନ୍ତ୍ରିମଣ୍ଡଳ ପ୍ରତିଷ୍ଠିତ ହୋଇଥିବାରୁ ଏବଂ ଏହି ମନ୍ତ୍ରିମଣ୍ଡଳ ଯୁଦ୍ଧ ଉଦ୍ୟମରେ ସାହାଯ୍ୟ କରୁଛନ୍ତି ବୋଲି ବିଶ୍ୱାସ କରାଯାଉଥିବାରୁ ସେହି ମନ୍ତ୍ରିମଣ୍ଡଳର ମୁଖପତ୍ର ଦୈନିକ 'ନବଭାରତର' ସଂପାଦକୀୟ ଓ ପରିଚାଳନା ବିଭାଗରେ ନେତାଜୀଙ୍କ ଓଡିଶା ସହଯୋଗୀମାନେ ନେତାଜୀଙ୍କଠାରୁ ଆସୁଥିବା ନିର୍ଦ୍ଦେଶ ଅନୁସାରେ ପ୍ରଚାର କରୁଥିଲେ । ଜାପାନର କାବୁଲ ଦୂତାବାସ ଜରିଆରେ ନେତାଜୀଙ୍କଠାରୁ ଯେଉଁ ସବୁ ନିର୍ଦ୍ଦେଶ ଓ ପ୍ରଚାର ପତ୍ର ଭାରତକୁ ଆସୁଥିଲା ସେସବୁ ଅନ୍ୟ ଅଞ୍ଚଳପରି କଲିକତାରୁ ଓଡିଶାକୁ ଆସୁଥିଲା ଓ ଓଡିଶାର କର୍ମୀମାନେ ସେହି ଅନୁସାରେ ପ୍ରଚାର କରୁଥିଲେ । 'ନବଭାରତ' ପତ୍ରିକାର ସଂପାଦକୀୟ ଓ ପରିଚାଳନା ଦାୟିତ୍ୱରେ ସେତେବେଳେ ଅଶୋକ ଦାସ, ବିଭୁଧେନ୍ଦ୍ର ମିଶ୍ର, ସୁରାଜମଲ ସାହା, ଶ୍ରୀହର୍ଷ ମିଶ୍ର, ବଳରାମ ମହାନ୍ତି ଓ ସତ୍ୟ ନାରାୟଣ ପଟ୍ଟନାୟକ ପ୍ରମୁଖ ରହିଥିଲେ ଓ ଏମାନେ ସମସ୍ତେ ସେତେବେଳର ଛାତ୍ର ଆନ୍ଦୋଳନର ସକ୍ରୀୟ କର୍ମକର୍ତ୍ତା ଥିଲେ । ମିଳିତ ମନ୍ତ୍ରିମଣ୍ଡଳର ମୁଖପତ୍ର ନବଭାରତ

ଦୈନିକ ପତ୍ରିକା ସହିତ ସଂପୃକ୍ତ ଥିବାରୁ ହିଁ ସେମାନେ ଗିରଫ ନ ହୋଇ ବାହାରେ ରହି ନେତାଜୀଙ୍କ ବାର୍ତ୍ତାର ପ୍ରଚାର କାର୍ଯ୍ୟ କରି ପାରିଥିଲେ । ମଝିରେ ମଝିରେ ସେମାନେ ବିଭିନ୍ନ ସ୍ଥାନକୁ ମଧ୍ୟ ଯାଉଥିଲେ ।

ପଣ୍ଡିତ ନୀଳକଣ୍ଠଦାସଙ୍କ ଦ୍ୱାରା ପ୍ରତିଷ୍ଠିତ 'ନବଭାରତ ପ୍ରେସ' ଓ ତାଙ୍କ ଉଦ୍ୟମରେ ପ୍ରତିଷ୍ଠିତ ମିଳିତ ମନ୍ତ୍ରିମଣ୍ଡଳ ନେତାଜୀଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେଯୁଦ୍ଧ ଉଦ୍ୟମକୁ ଭଣ୍ଡୁର କରିବାପାଇଁ ଯେ ଭିତରେ ଭିତରେ କାର୍ଯ୍ୟ କରୁଥିଲେ ତାହା ବହୁ ଘଟଣାରୁ ସ୍ପଷ୍ଟ ପ୍ରମାଣିତ ହୋଇଥିଲା । ଏଠାରେ ଗୋଟିଏ ସ୍ପଷ୍ଟ ଦୃଷ୍ଟାନ୍ତ ଦିଆଯାଉଛି । ଏହି ପୁସ୍ତକର ଲେଖକ ସେତେବେଳେ ନବଭାରତ ପ୍ରେସର ମୁଦ୍ରାକର ଓ ସହକାରୀ ସଂପାଦକ ଥାଇ ସେହି ପ୍ରେସରୁ ''ବିପ୍ଲବୀ ସୁଭାଷ'' ବୋଲି ନେତାଜୀଙ୍କର ଜୀବନୀ ଲେଖି ପ୍ରକାଶ କରିଥିଲେ । ମିଳିତ ମନ୍ତ୍ରିମଣ୍ଡଳ ଭାଙ୍ଗିବାକୁ ଚାହୁଁଥିବା ଜଣେ ବ୍ୟକ୍ତି ସେ ବହିଖଣ୍ଡିଏ ସେତେବେଳର ଓଡ଼ିଶା ଲାଟଙ୍କୁ ଦେଇ ତାଙ୍କୁ ବୁଝେଇ ଦେଇଥିଲେ ଯେ ଏହି ମିଳିତ ମନ୍ତ୍ରିମଣ୍ଡଳ ଭିତରେ ଭିତରେ ନେତାଜୀଙ୍କର ପ୍ରଚାର କରି ଯୁଦ୍ଧ ଉଦ୍ୟମକୁ ଭଣ୍ଡୁର କରୁଛନ୍ତି । ଗୋରା ଲାଟସାହେବ ତାହା ବୁଝିପାରି ମୁଖ୍ୟମନ୍ତ୍ରୀ ପାରଳା ମହାରାଜାଙ୍କୁ ଏହା ଜଣାଇଥିଲେ । ଶେଷରେ ନବଭାରତ ପ୍ରେସର ମାଲିକ ପଣ୍ଡିତ ନୀଳକଣ୍ଠଙ୍କୁ ଯେତେବେଳେ ଏହା କୁହାଗଲା ସେ ଏଥିରେ ବିଚଳିତ ହେଲେ ନାହିଁ । ଏଥିରେ ମନ୍ତ୍ରିମଣ୍ଡଳର କିଛି କ୍ଷତି ହେଲା ନାହିଁ ମାତ୍ର ''ବିପ୍ଲବୀ ସୁଭାଷ'' ପୁସ୍ତକଟି ବାଜ୍ୟାପ୍ତ ହେଲା ଓ ଏହି ପୁସ୍ତକଗୁଡ଼ିକୁ ନେଇଯିବା ପାଇଁ ନବଭାରତ ପ୍ରେସ ଖାନତଲାସ ହୋଇଥିଲା । ଏହି ଖାନତଲାସ ବେଳେ ବିପ୍ଲବୀ ସୁଭାଷ ପୁସ୍ତକଛଡ଼ା ନେତାଜୀ ସୁଭାଷଚନ୍ଦ୍ରଙ୍କ କେତେକ ବେତାର ଭାଷଣ ଓ ନିର୍ଦ୍ଦେଶ ସଂବନ୍ଧୀୟ ପ୍ରଚାର ପତ୍ର ମିଳିଥିଲା । ତେଣୁ ସେତେବେଳେ ନବଭାରତ ପ୍ରେସ ଯେ ନେତାଜୀଙ୍କ ଚିନ୍ତାଧାରା ପ୍ରଚାର କେନ୍ଦ୍ରଥିଲା ତାହା ଏଥିରୁ ପ୍ରମାଣିତ ହୋଇଛି ଓଡ଼ିଶା ସରକାରଙ୍କର ସେତେବେଳର ଗୋଇନ୍ଦାବିଭାଗ କାଗଜପତ୍ରରୁ ଏହା ମିଳିପାରିବ ।

୧୯୪୨ ମସିହା ଅଗଷ୍ଟ ଆନ୍ଦୋଳନ ଆରମ୍ଭ ହେବାପରେ 'ନବଭାରତ' ସଂପୃକ୍ତ ନେତାଜୀଙ୍କ ଏହି ଅନୁଗାମୀ ମାନେ ସମସ୍ତେ ଗିରଫ ହୋଇ ଅଟକ ବନ୍ଦୀ ହୋଇଥିଲେ ।

## ନେତାଜୀଙ୍କ ଅନ୍ତର୍ଦ୍ଧାନ କାହାଣୀ କିପରି ଜଣାପଡ଼ିଲା

ନେତାଜୀ ସୁଭାଷ ଚନ୍ଦ୍ରଙ୍କ ସାଙ୍ଗରେ କାବୁଲ ପର୍ଯ୍ୟନ୍ତ ଯାଇଥିବା ଭଗତରାମ ତଲୱାର ସେଠାରୁ ୧୯୪୧ ମାର୍ଚ୍ଚ ୩୧ ତାରିଖ ଦିନ କଲିକତା ଫେରିଆସି ନେତାଜୀଙ୍କ ଭାଇ ଶରତଚନ୍ଦ୍ର ବୋଷ ପୁତୁରା ଶିଶିର କୁମାର ବୋଷ ଓ ନେତାଜୀଙ୍କର ବିଶ୍ୱସ୍ତ ସହଯୋଗୀ ସତ୍ୟରଞ୍ଜନବକ୍ସିଙ୍କୁ ନେତାଜୀଙ୍କ ଅନ୍ତର୍ଦ୍ଧାନର ରୋମାଞ୍ଚକର କାହାଣୀ ବର୍ଣ୍ଣନା କରିଥିଲେ । ତାଛଡ଼ା ସେ ନେତାଜୀଙ୍କଠାରୁ ଆଣିଥିବା ତିନୋଟି ପତ୍ର ଶରତଚନ୍ଦ୍ର ବୋଷଙ୍କୁ ଦେଇଥିଲେ ଏହା ଭିତରେ ଥିଲା ଫରୱାର୍ଡ ବ୍ଲକ ଗଠନର ଯଥାର୍ଥତା ସଂବନ୍ଧରେ ଏକ ରାଜନୈତିକ ସନ୍ଦର୍ଭ; ୧୯୪୧ ମସିହା ମାର୍ଚ୍ଚମାସରେ ନେତାଜୀଙ୍କ ଦେଶବାସୀଙ୍କୁ ବାର୍ତ୍ତା ଇଉରୋପରେ କୌଣସି ସ୍ଥାନରୁ ପ୍ରଚାରୀତ ଏବଂ ବଙ୍ଗଳାରେ ଶରତଚନ୍ଦ୍ର ବୋଷଙ୍କୁ ଲେଖିଥିବା ଏକ ବ୍ୟକ୍ତିଗତ ପତ୍ର । ଭଗତରାମ କଲିକତାର ଭିକ୍ଟୋରିଆ ମେମୋରିଆଲଠାରେ ଶରତବୋଷଙ୍କ ସହିତ ସାକ୍ଷାତକରି ପେଶାୱାର ଠାରୁ ରୁଷ ସୀମାନ୍ତ ପର୍ଯ୍ୟନ୍ତ ନେତାଜୀଙ୍କ ରୋମାଞ୍ଚକର ଭ୍ରମଣ କାହାଣୀ ବର୍ଣ୍ଣନା କରିଥିଲେ । ତାପରେ ଶରତଚନ୍ଦ୍ର ବୋଷ କଲିକତାରେ ଅବସ୍ଥାପିତ ଜାପାନି କନସଲ ଜେନେରାଲଙ୍କ ଗୋପନୀୟ ସହାଯତାରେଟୋକିଓ ଦେଇ ଯାଉଥିବା ବେତାର ବାର୍ତ୍ତା ଜରିଆରେ ନେତାଜୀ ସୁଭାଷ ଚନ୍ଦ୍ରଙ୍କ ସହିତ ୧୯୪୧ ମସିହା ନଭେମ୍ବର ପର୍ଯ୍ୟନ୍ତ ସଂପର୍କ ରଖିଥିଲେ । ବର୍ଲିନ ଯିବା ବାଟରେ ମସ୍କୋଠାରେ ନେତାଜୀ ଅଳ୍ପକିଛିଦିନ ରହିଥିବା ସମୟ ଭିତରେ ରୁଷ ସହିତ ତାଙ୍କର କି କଥାବାର୍ତ୍ତା ହୋଇଥିଲା ତାହା ଏପର୍ଯ୍ୟନ୍ତ ଜଣାଯାଇ ନାହିଁ । ସେ ତାଙ୍କର କାବୁଲ

ତାତ୍ତ୍ୱିକ ନିବନ୍ଧରେ ଲେଖିଥିଲେ ଯେ ସୋଭିଏଟ୍ ରୁଷ ବିଶ୍ୱର ସର୍ବାପେକ୍ଷା ଶକ୍ତିଶାଳୀ ଦେଶ ସେ ଅତୀତରେ ରୁଷର ସାହାଯ୍ୟ ଲୋଡିଛନ୍ତି, ଏମିତିକି ଭାରତର ସ୍ୱାଧୀନତା ନିମନ୍ତେ ରୁଷ ହସ୍ତକ୍ଷେପ କରୁବୋଲି ସେ ଚାହିଁଥିଲେ ।

## ଜର୍ମାନୀ ସରକାରଙ୍କୁ ସୁଭାଷଚନ୍ଦ୍ରଙ୍କ ପ୍ରସ୍ତାବ

ଜର୍ମାନୀରେ ପହଞ୍ଚିବାର ଏକ ସପ୍ତାହପରେ ନେତାଜୀ ସୁଭାଷଚନ୍ଦ୍ର ଜର୍ମାନୀ ସରକାରଙ୍କୁ ଭାରତର ସ୍ୱାଧୀନତା ସଂଗ୍ରାମ ଓ ଦ୍ୱିତୀୟ ମହାଯୁଦ୍ଧ ବେଳେ ଭାରତ ଓ ଜର୍ମାନୀ ଭିତରେ ସହଯୋଗ ସଂବନ୍ଧରେ ଏକ ବିସ୍ତୃତ ସ୍ମାରକପତ୍ର ପ୍ରଦାନ କରିଥିଲେ । ପ୍ରଥମ ପର୍ଯ୍ୟାୟରେ ଇଉରୋପରେ ଏକ ସ୍ୱାଧୀନ ଭାରତ ସରକାର ପ୍ରତିଷ୍ଠା ଏବଂ ଏକ ପକ୍ଷରେ ଜର୍ମାନୀ ଓ ଇଟାଲି ଭିତରେ ଏକ ଚୁକ୍ତି ଓ ଅନ୍ୟ ପକ୍ଷରେ ଯୁଦ୍ଧରେ ବିଜୟୀ ହେବାପରେ ଭାରତର ସ୍ୱାଧୀନତା ପାଇଁ ଦୃଢପ୍ରତିଶ୍ରୁତି ପ୍ରଦାନ । ସେ ମଧ୍ୟ ଆଫଗାନୀସ୍ଥାନରେ ଆଦିବାସୀ ଅଞ୍ଚଳରେ ତଥା ଭାରତ ଭିତରେ ଯେଉଁ ସବୁ କାର୍ଯ୍ୟ ହେବ ତାର ଏକ ଚିତ୍ର ଦେଇଥିଲେ । ଏଥିପାଇଁ ଆବଶ୍ୟକ ଥିବା ଅର୍ଥ ସଂବନ୍ଧରେ ସୁଭାଷଚନ୍ଦ୍ର ପ୍ରସ୍ତାବ ଦେଇଥିଲେ ଯେ ବିଦେଶୀ ସରକାର ମାନଙ୍କଠାରୁ ଋଣ ଆକାରରେ ଆର୍ଥିକ ସମ୍ବଳ ସଂଗ୍ରହ କରାଯିବ ଏବଂ ଯୁଦ୍ଧପରେ ସ୍ୱାଧୀନ ଭାରତ ସେହି ଋଣ ପରିଶୋଧ କରିବ । ସେ ମଧ୍ୟ ଏକ ଭାରତୀୟ ସୈନ୍ୟବାହିନୀ ଗଠନ କରିବାକୁ ଚାହିଁଥିଲେ ଏବଂ ସଙ୍କଟଜନକ ସମୟରେ ବ୍ରିଟିଶସରକାରଙ୍କ ସୈନ୍ୟବାହିନୀ ବିଦ୍ରୋହ କଲାବେଳେ ସେମାନେ ତାର ନେତୃତ୍ୱ ନେବେ । ଭାରତର ସ୍ୱାଧୀନତା ଜର୍ମାନୀ ସରକାର ସ୍ୱୀକାର କରିବା ଉପରେ ସେ ଜୋର ଦେଇ ଥିଲେ । ଜର୍ମାନୀ ବୈଦେଶିକ ଅଫିସରୁ ଉତ୍ତର ନମିଳିବାରୁ ସେ ଜର୍ମାନୀରେ ନିର୍ବାସିତ ହୋଇଥିବା ଭାରତୀୟ ଏବଂ ଇଉରୋପରେ ବାସକରୁଥିବା ଭାରତୀୟ ଛାତ୍ରମାନଙ୍କୁ ନେଇ ଏକ ଶୃଙ୍ଖଳିତ ଭାରତୀୟ ବାହିନୀ ଗଠନ କରିବାକୁ ଉଦ୍ୟମ କରିଥିଲେ । ସେ ମଧ୍ୟ ଇଟାଲି ଫ୍ରାନ୍ସ ଓ ଅଷ୍ଟ୍ରିଆ ପ୍ରଭୃତି ଦେଶ ଭ୍ରମଣ କରି ସେଠାରେ ଭାରତୀୟଙ୍କ ସହିତ ବନ୍ଧୁତ୍ୱ ପୂର୍ଣ୍ଣ ସଂପର୍କ ସ୍ଥାପନ କରିଥିଲେ ।

## ଜର୍ମାନୀରେ ସ୍ୱତନ୍ତ୍ର ଭାରତ ଦପ୍ତର

ନେତାଜୀ ସୁଭାଷଚନ୍ଦ୍ର ବର୍ଲିନ୍‌ରେ ପହଞ୍ଚିବାପରେ ଜର୍ମାନ ସରକାର ବା ନାଜିଦଳରେ କୌଣସି ଆଲୋଡ଼ନ ସୃଷ୍ଟି ହୋଇ ନଥିଲେ ମଧ୍ୟ ସେତେବେଳେ ନୂଆ ହୋଇ ଖୋଲା ହୋଇଥିବା ଜର୍ମାନୀ ବୈଦେଶିକ ବିଭାଗରେ ତାଙ୍କ ପ୍ରତି ଆଗ୍ରହ ପ୍ରକାଶ ପାଇଥିଲା । ଏହି ବିଭାଗରେ ବ୍ରିଟେନ ବ୍ରିଟିଶ ସାମ୍ରାଜ୍ୟ, ଦକ୍ଷିଣ ପୂର୍ବ ଏସିଆ ଓ ଯୁକ୍ତରାଷ୍ଟ୍ର ଆମେରିକା ସଂବନ୍ଧରେ ସ୍ୱତନ୍ତ୍ର ଅଧ୍ୟୟନ ଓ ଗବେଷଣା କରିଥିବା ବିଶେଷଜ୍ଞ ମାନଙ୍କୁ ଆଣି ରଖାଯାଇଥିଲା ଏବଂ ଏହି ବିଭାଗ ଆଡାମ ଉନ୍‌ଟ୍ରଟ୍‌ଙ୍କ ଅଧକ୍ଷତାରେ ପରିଚାଳିତ ହେଉଥିଲା । ସେ ଅକ୍ସଫୋର୍ଡରେ ଶିକ୍ଷାଲାଭ କରିଥିଲେ ଏବଂ ଭାରତୀୟ ସମସ୍ୟା ସଂପର୍କରେ ତାଙ୍କର ବିଶେଷ ଜ୍ଞାନଥିଲା । ତାଙ୍କ ସହକାରୀ ଆଲେକଜାଣ୍ଡାର ୱାର୍ଥ ଇଂଲଣ୍ଡରେ ବାରିଷ୍ଟର ଥିଲେ । ଭାରତୀୟ ସ୍ୱାଧୀନତା ପ୍ରତି ସେମାନଙ୍କର ସହାନୁଭୂତିଥିଲା । ସୁଭାଷଚନ୍ଦ୍ରଙ୍କ ସଙ୍ଗେ ସେମାନଙ୍କର ଘନିଷ୍ଠ ବନ୍ଧୁତା ପ୍ରତିଷ୍ଠିତ ହୋଇଥିଲା ଓ ସେମାନେ ତାଙ୍କ ଲକ୍ଷ୍ୟ ହାସଲରେ ଯଥାସାଧ୍ୟ ସାହାଯ୍ୟ କରିବାପାଇଁ ଉଦ୍ୟମ କରିଥିଲେ । ସେମାନେ ସୁଭାଷଚନ୍ଦ୍ରଙ୍କ ସାହାଯ୍ୟରେ ଜର୍ମାନୀ ସରକାରଙ୍କ ସର୍ବୋଚ୍ଚ କର୍ମକର୍ତ୍ତାମାନଙ୍କୁ ଭାରତୀୟ ସ୍ୱାଧୀନତା ସଂଗ୍ରାମ ସଂବନ୍ଧରେ ବୁଝାଇ ଥିଲେ ଓ ସେମାନଙ୍କ ସହାନୁଭୂତି ପାଇବା ପାଇଁ ଉଦ୍ୟମ କରିଥିଲେ ଏହା ଫଳରେ ଜର୍ମାନୀର ସୂଚନା ବିଭାଗରେ ସୁଭାଷଚନ୍ଦ୍ରଙ୍କ ଆଗମନ ପରେ ଯେଉଁ ନୂତନ ସଚେତନତା ସୃଷ୍ଟି ହେଲା ତାଫଳରେ ଜର୍ମାନୀର ସାମରିକ ନେତା ଓ ଜର୍ମାନୀ ବୈଦେଶିକ ମନ୍ତ୍ରଣାଳୟର ସୁଭାଷଚନ୍ଦ୍ରଙ୍କ ପ୍ରତି ଦୃଷ୍ଟି ଆକୃଷ୍ଟ ହେଲା ଅଳ୍ପଦିନ ଭିତରେ ଜର୍ମାନୀ ବୈଦେଶିକ ଦପ୍ତରର ସୂଚନା ବିଭାଗରେ ଉନ୍‌ଟ୍ରଟ୍ ଓ ୱାର୍ଥଙ୍କ ଅଧ୍ୟକ୍ଷତାରେ ଏକ ସ୍ୱତନ୍ତ୍ର ଭାରତ ଦପ୍ତର ଖୋଲାଗଲା ।

ଜର୍ମାନୀରେ କ୍ରମଶଃ ସୁଭାଷଚନ୍ଦ୍ରଙ୍କ ବନ୍ଧୁ ଓ ସହାନୁଭୂତିଶୀଳ ବ୍ୟକ୍ତିଙ୍କ ସଂଖ୍ୟା ବୃଦ୍ଧି ପାଇଲା । ସେମାନଙ୍କର ହୃଦବୋଧ ହେଲାଯେ ସେ ଜଣେ ଅସାଧାରଣ ଇଚ୍ଛା ଶକ୍ତି ସଂପନ୍ନ ଓ ନିଷ୍ଠାପର ବ୍ୟକ୍ତି ଏବଂ ସେ ନାଜିଦଳର ଖାମଖିଆଲି ନୀତି ଆଗରେ ମୁଣ୍ଡ ନୁଆଁଇବେ ନାହିଁ ଏବଂ ଭାରତର ସ୍ୱାଧୀନତା କ୍ଷେତ୍ରରେ ସେ କୌଣସି ଆପୋଷ ମିଳାମିଶା କରିବେନାହିଁ । ୧୯୪୧ ଜୁନ ଶେଷଭାଗରେ ଯେତେବେଳେ ସୁଭାଷଚନ୍ଦ୍ର ରୋମରେ ଥିଲେ ସେହି ସମୟରେ ଜର୍ମାନୀ ସୋଭିଏତ୍ ରୁଷ ଉପରେ ଆକ୍ରମଣ କଲା । ସାଙ୍ଗେ ସାଙ୍ଗେ ଜର୍ମାନୀ ବୈଦେଶିକ ଅଫିସକୁ ଜଣାଇଦେଲେ ଯେ ଏହି ଯୁଦ୍ଧରେ ଜର୍ମାନୀହିଁ ଆକ୍ରମଣକାରୀ ଏବଂ ଭାରତବାସୀଙ୍କର ସୋଭିଏତ୍ ରୁଷ ପ୍ରତି ସହାନୁଭୂତି ରହିଛି । କାରଣ ସେମାନଙ୍କ ମତରେ ସୋଭିଏତ୍ ରୁଷ ବିଶ୍ୱର ଏକ ସାମ୍ରାଜ୍ୟବାଦ ବିରୋଧୀ ଶକ୍ତି । ସେ ଜର୍ମାନୀ ସରକାରଙ୍କୁ ତାଙ୍କ ସ୍ମାରକପତ୍ରରେ ମଧ୍ୟ ଜଣାଇ ଦେଇଥିଲେ ଯେ ଭାରତର ସ୍ୱାଧୀନତା ପାଇଁ ତାଙ୍କ ପରିକଳ୍ପନାରେ ରୁଷର ସାହାଯ୍ୟ ଦରକାର ପଡିବ ।

## ବର୍ଲିନ୍‌ରେ ସ୍ୱାଧୀନ ଭାରତ କେନ୍ଦ୍ର

ସୁଭାଷଚନ୍ଦ୍ର ବର୍ଲିନ୍‌ଠାରେ ରହି ସ୍ୱତନ୍ତ୍ର ଭାରତ ଦପ୍ତରରେ କାର୍ଯ୍ୟ ଆରମ୍ଭ କରିବା ପରେ ପରେ ଯୁଦ୍ଧ ପରିସ୍ଥିତି ଯୋଗୁ ତାଙ୍କ ପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହୋଇଥିଲା । ୧୯୪୧ ମଧ୍ୟଭାଗରେ ବହୁ ସଂଖ୍ୟକ ଯୁଦ୍ଧ ବନ୍ଦୀ ଭାବରେ ଭାରତୀୟ ଦକ୍ଷିଣ ଆଫ୍ରିକା ଯୁଦ୍ଧ କ୍ଷେତ୍ରରୁ ଜର୍ମାନୀରେ ଆସି ପହଞ୍ଚିଲେ । ଜର୍ମାନମାନେ ଦେଖିଲେ ଯେ ଏହି ଯୁଦ୍ଧ ବନ୍ଦୀ ଭାରତୀୟମାନେ ବ୍ରିଟିଶ ସରକାର ବିରୋଧୀ ମାତ୍ର ଜର୍ମାନୀ ସରକାର ସେମାନଙ୍କୁ ନିଜ କାମରେ ଲଗାଇବାକୁ ଚାହିଁନଥିଲେ । ସୁଭାଷଚନ୍ଦ୍ର ବର୍ଲିନଠାରେ ସ୍ୱାଧୀନ ଭାରତ କେନ୍ଦ୍ର ପ୍ରତିଷ୍ଠା କରିବା ପରେ ଏହି ଯୁଦ୍ଧବନ୍ଦୀ ଭାରତୀୟ ସୈନ୍ୟମାନଙ୍କୁ ନେଇ ଭାରତୀୟ ଜାତୀୟ ସୈନ୍ୟବାହିନୀ ଗଠନ କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୪୧ ମସିହା ଶେଷବେଳକୁ ସେ ସ୍ୱାଧୀନ ଭାରତ କେନ୍ଦ୍ର ପ୍ରତିଷ୍ଠା କଲାବେଳେ ଜର୍ମାନୀରେ ଥିବା ଏ.ସି.ଏନ ନାମ୍ବିୟର, ଏନ.ଜି. ଗଣପୁଲେ, ଆବିଦହାସାନ, ଏନ.ଜି.ସ୍ୱାମୀ, ଏମ.ଆର.ବ୍ୟାସ, ଗିରିଜା ମୁଖାର୍ଜୀ ପ୍ରମୁଖ ବିଜ୍ଞ ଓ ପ୍ରବୀଣ ବ୍ୟକ୍ତି ମାନେ ତାଙ୍କ ସହିତ ସହଯୋଗ କରିଥିଲେ । ଏହି ସ୍ୱାଧୀନ ଭାରତ କେନ୍ଦ୍ର ଜରିଆରେ ନେତାଜୀ ସୁଭାଷ ଚନ୍ଦ୍ର ''ଆଜାଦହିନ୍ଦ୍ ରେଡିଓ'', ''ଜାତୀୟ କଂଗ୍ରେସ ରେଡିଓ'' ଓ ''ଆଜାଦ ମୁସଲିମ ରେଡିଓ'' ଯୋଗେ ପ୍ରଚାର କାର୍ଯ୍ୟ ଚଳେଇଥିଲେ । ଏଠାରୁ ସେ ଜର୍ମାନୀ ଓ ଇଂରେଜୀ ଭାଷାରେ ଏକ ଦ୍ୱିଭାଷିକ ସାମୟିକ ପ୍ରଚାର ପତ୍ର ପ୍ରକାଶ କରି ସମଗ୍ର ଇଉରୋପକୁ ପଠାଉଥିଲେ ଏହି ପତ୍ରିକାରେ ଭାରତୀୟ ରାଜନୀତି, ଅର୍ଥନୀତି, ସଂସ୍କୃତି, ଦର୍ଶନ ଓ କଳା ସଂବନ୍ଧରେ ପ୍ରବନ୍ଧମାନ ପ୍ରକାଶିତ ହେଉଥିଲା । ଜର୍ମାନୀରେ ରହିଥିବା ଭାରତୀୟ ମାନଙ୍କୁ ସଂଗଠିତ କରାଯାଉଥିଲା । ଇଉରୋପର ବିଭିନ୍ନ ସ୍ଥାନରେ କାର୍ଯ୍ୟ କରୁଥିବା ସ୍ୱାଧୀନ ଭାରତ କେନ୍ଦ୍ରମାନଙ୍କ କାର୍ଯ୍ୟ ଭିତରେ ସମନ୍ୱୟ ସ୍ଥାପନ କରାଯାଉଥିଲା । ଜର୍ମାନୀରେ ଆସି ପହଞ୍ଚିଥିବା ଯୁଦ୍ଧବନ୍ଦୀ ଭାରତୀୟମାନଙ୍କୁ ନେଇ ଭାରତୀୟ ଜାତୀୟ ସୈନ୍ୟବାହିନୀ ସେ ଗଠନ କରିଥିଲେ ଏବଂ ସେମାନଙ୍କ ସ୍ୱାର୍ଥରକ୍ଷା ପ୍ରତି ଦୃଷ୍ଟି ଦେଉଥିଲେ ।

## ଦୁଇ ମହାସ୍ରୋତର ମିଳନ

ଏହିଭଳି ଆନ୍ତର୍ଜାତୀୟ ପରିସ୍ଥିତିବେଳେ ୧୯୪୨ ମସିହା ଏପ୍ରିଲ ମଇ ମାସରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଜାତୀୟ କଂଗ୍ରେସ କ୍ରିପସ୍ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ବ୍ରିଟିଶ ଶାସନ ବିରୁଦ୍ଧରେ ଶେଷ ସଂଗ୍ରାମ ପାଇଁ ପ୍ରସ୍ତୁତ ହୋଇଥିଲେ । ଏହି କ୍ରିପସ୍ ପ୍ରସ୍ତାବ ଭାରତର ସ୍ୱାଧୀନତା ଘୋଷଣା ପାଇଁ ପ୍ରତିଶ୍ରୁତି ଦିଆନଯାଇ ଆପୋଷ ମିଳାମିଶା ଭିତ୍ତି ଉପରେ ପ୍ରସ୍ତୁତ କରାଯାଇଥିଲା । ଗାନ୍ଧିଜୀ କଂଗ୍ରେସର ଚିଠାପ୍ରସ୍ତାବ ଉପରେ ଭାଷଣ ଦେଇ କହିଥିଲେ - ''ଭାରତୀୟ ସୈନ୍ୟବାହିନୀ ଏକ ବିଚ୍ଛିନ୍ନ ସଂଗଠନ । ଏହା ଭାରତୀୟଙ୍କ ପ୍ରତିନିଧିମୂଳକ ଅନୁଷ୍ଠାନ

ନୁହେଁ ତେଣୁ ଭାରତରେ ଏହାକୁ ନିଜର ବୋଲି କିଏ ବା ବିଚାର କରିବ । ଭାରତ ସହିତ ଜାପାନର କିଛି ବିବାଦ ନାହିଁ । ଭାରତ ସ୍ୱାଧୀନ ହେଲେ ସର୍ବପ୍ରଥମେ ଜାପାନ ସହିତ ବନ୍ଧୁତା ସ୍ଥାପନ କରିବ'' । ଏପରି ଭାରତରେ ଜାତୀୟ କଂଗ୍ରେସର ମତିଗତି ଓ ବର୍ଲିନରେ ନେତାଜୀଙ୍କ କାର୍ଯ୍ୟକଳାପ - ଏହି ଦୁଇଟି ମୁଖ୍ୟ ସ୍ରୋତ ପରସ୍ପରର ନିକଟବର୍ତ୍ତୀ ହୋଇଥିଲେ ଏବଂ ଶେଷରେ ୧୯୪୨ ଅଗଷ୍ଟ ବିପ୍ଳବରେ ଦୁଇଟି ମହାସ୍ରୋତ ଏକାଠି ହୋଇଯାଇଥିଲେ ।

## ବିପ୍ଳବୀ ସୁଭାଷ 'ନେତାଜୀ' ହେଲେ

ନେତାଜୀ ସୁଭାଷଚନ୍ଦ୍ରଙ୍କ ନେତୃତ୍ୱରେ ପରିଚାଳିତ ଜର୍ମାନୀର ସ୍ୱାଧୀନ ଭାରତ କେନ୍ଦ୍ର ସ୍ୱାଧୀନତା ପରେ ଭାରତର ସାମାଜିକ ଓ ଅର୍ଥନୈତିକ ପୁର୍ନଗଠନ ନିମନ୍ତେ ଏକ ଯୋଜନା କମିସନ ଗଠନ କରିଥିଲେ । କଂଗ୍ରେସର ତ୍ରିରଙ୍ଗା ପତାକାକୁ ନିଜର ପତାକା ଭାବରେ ଗ୍ରହଣ କରି ନେଇଥିଲେ । କେବଳ ଏହି ପତାକା ମଝିରେ ଚରଖା ବଦଳରେ ଗୋଟିଏ ଲମ୍ଫମାନ ବ୍ୟାଘ୍ରର ଛବି ରଖାଯାଇଥିଲା । ବିଶ୍ୱକବି ରବୀନ୍ଦ୍ରନାଥଙ୍କ 'ଜନଗଣମନ' ସଂଗୀତକୁ ଜାତୀୟ ସଂଗୀତ ଭାବରେ ଗ୍ରହଣ କରାଯାଇଥିଲା ଏବଂ ଭାରତ ଇତିହାସରେ ପ୍ରଥମଥର ପାଇଁ ଭାରତୀୟମାନେ ପରସ୍ପରକୁ ଜୟହିନ୍ଦ ବୋଲି କହି ସ୍ୱାଗତ କରିବେ ବୋଲି ନିଷ୍ପତ୍ତି କରାଯାଇଥିଲା । ସ୍ୱାଧୀନ ଭାରତ କେନ୍ଦ୍ରର କର୍ମକର୍ତ୍ତାମାନେ ଏହି ସମୟରେ ତାଙ୍କୁ 'ନେତାଜୀ' ନାମରେ ସମ୍ବୋଧନ କରିଥିଲେ । ଏହି ଶ୍ରଦ୍ଧା ଓ ସମ୍ମାନ ସୂଚକ ନାମରେ ବିପ୍ଳବୀ ସୁଭାଷଚନ୍ଦ୍ର ବୋଷ ଆଜି ମଧ୍ୟ ସମଗ୍ର ଭାରତବାସୀଙ୍କ ନିକଟରେ ସୁପରିଚିତ । ସିଙ୍ଗାପୁର ଜାପାନଦ୍ୱାରା ଅଧିକୃତ ହେବାପରେ ୧୯୪୨ ମସିହା ଫେବୃଆରୀ ମାସରେ ନେତାଜୀ ଭାରତବାସୀଙ୍କୁ ସମ୍ବୋଧନ କରି କହିଥିଲେ- ''ଭାରତର ମୁକ୍ତି ବର୍ତ୍ତମାନ ଆମ ହାତପାଖକୁ ଆସିଯାଇଛି । ଭାରତବାସୀ ବର୍ତ୍ତମାନ ଜାଗ୍ରତ ହୋଇ ବ୍ରିଟିଶର ଦାସତ୍ୱ ବନ୍ଧନରୁ ନିଜକୁ ଛିନ୍ନ କରିଦେବେ । ଭାରତର ମୁକ୍ତି ସଙ୍ଗେ ସଙ୍ଗେ ଏସିଆ ତଥା ସମଗ୍ର ବିଶ୍ୱର ପରାଧୀନ ଦେଶ ମହାନ ଲକ୍ଷ୍ୟ ମୁକ୍ତି ଆଡକୁ ଅଗ୍ରସର ହେବ।''

ସ୍ୱାଧୀନ ଭାରତ କେନ୍ଦ୍ର ପକ୍ଷରୁ ଯେଉଁ ଭାରତୀୟ ସାମରିକ ବାହିନୀ ଗଠିତ ହୋଇଥିଲା ତାହା ଥିଲା ଏକ ସ୍ୱେଚ୍ଛାକୃତ ଦେଶପ୍ରେମୀ ସୈନ୍ୟବାହିନୀ । ନେତାଜୀ ଏମାନଙ୍କୁ ନିଜେ ତାଲିମ କରିଥିଲେ ଏବଂ ଏଥିରେ ହିନ୍ଦୁ ମୁସଲମାନ, ଶିଖ, ପଂଜାବୀ, ମରାଠି ଓ ବଙ୍ଗାଳି ସବୁ ସଂପ୍ରଦାୟ ଓ ସବୁଭାଷା ଭାଷୀ ଓ ଜାତିର ଲୋକ ଥିଲେ । ଜାତିଧର୍ମ ନିର୍ବିଶେଷରେ ଏମାନଙ୍କ ଭିତରେ ଆତ୍ମୀୟତା ଥିଲା । ରୁଷ ଜର୍ମାନୀ ଯୁଦ୍ଧ ଫଳରେ ଉତ୍ତର-ପଶ୍ଚିମ ସୀମାନ୍ତରେ ଏହି ସୈନ୍ୟବାହିନୀ ତାଙ୍କ ବୈପ୍ଳବିକ ଭୂମିକା ଗ୍ରହଣ କରିପାରିଲେ ନାହିଁ । ମାତ୍ର ୧୯୪୪ ମସିହାରେ ବ୍ରିଟିଶ ଓ ଆମେରିକା ସୈନ୍ୟବାହିନୀ ଯେତେବେଳେ ଫାନ୍ସରେ ଅବତରଣ କଲେ, ଏହି ସୈନ୍ୟବାହିନୀ ସେଠାରେ ବୀରତ୍ୱ ସହ ଲଢେଇ କରିଥିଲେ । ୧୯୪୧ ମସିହା ଡିସେମ୍ବର ମାସରେ ସୁଦୂର ପ୍ରାଚ୍ୟରେ ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା ଏବଂ ୧୯୪୨ ଫେବୃଆରୀ ମାସରେ ଜାପାନି ସୈନ୍ୟ ଦ୍ରୁତ ଭାବରେ ଅଗ୍ରଗତି କରି ସିଙ୍ଗାପୁର ଅଧିକାର କରିନେଲେ, ସେତେବେଳେ ଭାରତର ସ୍ୱାଧୀନତା ପାଇଁ ଏକ ନୂତନ ଦିଗ୍‌ବଳୟ ଖୋଲିଗଲା ବୋଲି ନେତାଜୀ ମନେ କଲେ ଓ ସେ ପୂର୍ବ ପ୍ରାଚ୍ୟକୁ ଆସି ଭାରତ ଉପରେ ସଶସ୍ତ୍ର ଆକ୍ରମଣ କରିବା ପାଇଁ ଚିନ୍ତା କରିଥିଲେ ।

## ଏମିଲି ସେଙ୍କେଲ ସହ ନେତାଜୀଙ୍କ ବିବାହ

ନେତାଜୀ ସୁଭାଷଚନ୍ଦ୍ର ୧୯୩୪ ମସିହା ଜୁନ ମାସରେ ନିର୍ବାସିତ ହୋଇ ଅଷ୍ଟ୍ରିଆରେ ଥାଇ ତାଙ୍କ ଆତ୍ମଜୀବନୀ Indian Struggle (ଭାରତବାସୀଙ୍କ ମୁକ୍ତି ସଂଗ୍ରାମ) ପୁସ୍ତକ ଲେଖିଲାବେଳେ ଇଂରେଜୀ ଭାଷା ଜାଣିଥିବା ଜଣେ ଅଷ୍ଟ୍ରିଆ ଅଧିବାସୀ ମହିଳା ଏମିଲି ସେଙ୍କେଲ ତାଙ୍କୁ ଏ କାର୍ଯ୍ୟରେ ସାହାଯ୍ୟ କରିଥିଲେ । ନେତାଜୀ ତାଙ୍କୁ ଡାକି ଦେଉଥିଲେ ଏବଂ ସେ ତାଙ୍କୁ ଟାଇପ କରି ଆଣି

ଦେଉଥିଲେ । ତାଙ୍କ ସହିତ ନେତାଜୀ ତିନିବର୍ଷ ଏକାଠି କାମ କରିବା ଭିତରେ ଉଭୟଙ୍କ ଭିତରେ ଶ୍ରଦ୍ଧା ଓ ଆତ୍ମୀୟତା ବୃଦ୍ଧି ପାଇଥିଲା ଏବଂ ଶେଷରେ ୧୯୩୭ ମସିହାରେ ଉଭୟଙ୍କର ବିବାହ ହୋଇଥିଲା । ଉଭୟଙ୍କ ଭିତରେ ବିନିମୟ ହୋଇଥିବା ଯେଉଁସବୁ ପତ୍ର ପ୍ରକାଶିତ ହୋଇଛି, ସେଥିରେ ଗୋଟିଏ ପତ୍ର ତାଙ୍କ ସହଧର୍ମିଣୀ ଶ୍ରୀମତୀ ସେଙ୍କେଲ ଲେଖିଥିଲେ ଯେ ସୁଭାଷ ଚନ୍ଦ୍ର ଏହି ବିବାହ ବିଷୟ ବାହାରେ ପ୍ରକାଶ କରିବାକୁ ଚାହିଁ ନଥିଲେ କାରଣ ଏହା ଫଳରେ ଅପ୍ରୀତିକର ଘଟଣା ଘଟିପାରେ ବୋଲି ତାଙ୍କର ଆଶଙ୍କା ଥିଲା । ବିବାହପରେ ୧୯୪୧ ମସିହା ପର୍ଯ୍ୟନ୍ତ ସେ ଏକାଠି ରହିପାରିନଥିଲେ । ୧୯୪୧ ମସିହାରେ ନେତାଜୀ ଭାରତରୁ ଅନ୍ତର୍ଦ୍ଧାନ ହୋଇ ବର୍ଲିନରେ ପହଞ୍ଚିବା ପରେ ସେହିଠାରେ ସେ ଜାପାନ ଯିବା ପର୍ଯ୍ୟନ୍ତ ଦୁଇବର୍ଷ ସେମାନେ ଏକାଠି ରହିବାର ସୁଯୋଗ ପାଇଥିଲେ ଓ ସେତିକିବେଳେ ତାଙ୍କର କନ୍ୟା ଅନିତା ଜନ୍ମଗ୍ରହଣ କରିଥିଲା । ସେମାନଙ୍କ ଭିତରେ ଯେଉଁ ୧୬୨ ଖଣ୍ଡ ଚିଠି ଆଦାନ ପ୍ରଦାନ ହୋଇଥିଲା ତାହା ପୁସ୍ତକ ଆକାରରେ ପ୍ରକାଶ ପାଇଛି । ସୁଭାଷଚନ୍ଦ୍ର ତାଙ୍କ ସ୍ତ୍ରୀ ଏମିଲିଙ୍କୁ ଲେଖିଥିବା ଏକ ପତ୍ରରେ ଲେଖିଥିଲେ- "ତମକୁ ଦେବା ଭଳି ମୋର ଆଉ କିଛି ନାହିଁ । ମୁଁ ମୋର ଯାହା ଥିଲା ସେ ସମସ୍ତ ମୋର ପ୍ରଥମ ପ୍ରେମ ନିକଟରେ ସମର୍ପଣ କରିଦେଇଛି । ଭାରତବର୍ଷ ହିଁ ମୋର ପ୍ରଥମ ପ୍ରେମ ଓ ଏକମାତ୍ର ପ୍ରେମ ।"

## ହିଟଲରଙ୍କ ସହିତ ନେତାଜୀଙ୍କ ପ୍ରଥମ ଓ ଶେଷ ସାକ୍ଷାତ

ନେତାଜୀ ସୁଭାଷଚନ୍ଦ୍ର ଜର୍ମାନୀରେ ଅବସ୍ଥାନ କରିବାର ବର୍ଷେ ପରେ ଯାଇ ଜର୍ମାନୀର ଚାନସେଲର ହିଟଲରଙ୍କ ସହିତ ୧୯୪୨ ମସିହା ମଇମାସରେ ସାକ୍ଷାତ ହୋଇଥିଲା । ମାତ୍ର ସେ ତାଙ୍କ ଲକ୍ଷ୍ୟ ହାସଲ ପାଇଁ ହିଟଲରଙ୍କଠାରୁ କୌଣସି ପ୍ରତିଶ୍ରୁତି ପାଇଲେ ନାହିଁ । ତାଙ୍କ ସାକ୍ଷାତ ଫଳରେ ଗୋଟିଏ ଲାଭ ହେଲା ଯେ ଜାପାନ ଯିବାପାଇଁ ତାଙ୍କୁ ସାହାଯ୍ୟ କରିବେ ବୋଲି ହିଟଲର ପ୍ରତିଶ୍ରୁତି ଦେଲେ । ଏହାପରେ ଜର୍ମାନୀରୁ ପୂର୍ବପ୍ରାଚ୍ୟକୁ ଯିବା ସେତେବେଳେ ଅତ୍ୟନ୍ତ ବିପଜ୍ଜନକ ହୋଇଥିବାରୁ ଏଥିପାଇଁ ଏକ ନିରାପଦ ଯାତ୍ରା ବ୍ୟବସ୍ଥା କରିବା ପାଇଁ ଜର୍ମାନୀ ଓ ଜାପାନର ସାମରିକ କର୍ତ୍ତୃପକ୍ଷଙ୍କ ଭିତରେ ଦୀର୍ଘ ଆଲୋଚନା ହୋଇଥିଲା ।

## ନେତାଜୀଙ୍କ ଜାପାନକୁ ବିପଜ୍ଜନକ ଯାତ୍ରାର କାହାଣୀ

୧୯୪୩ ମସିହା ଜାନୁଆରୀ ୨୬ ତାରିଖରେ ବର୍ଲିନଠାରେ ଭାରତର ସ୍ୱାଧୀନତା ଦିବସ ମହାସମାରୋହରେ ପାଳିତ ହୋଇଥିଲା । ନେତାଜୀ ପତାକା ଉତ୍ତୋଳନ କରି ଉଦ୍‌ବୋଧନ ଦେଇଥିଲେ । ଦି ଦିନ ପରେ ସେ ଭାରତୀୟ ସାମରିକ ବାହିନୀଙ୍କୁ ଉଦ୍‌ବୋଧନ ଦେଲା ପରେ ଇଉରୋପରୁ ଶେଷ ବିଦାୟ ନେଇଥିଲେ । ୧୯୪୩ ଫେବୃଆରୀ ୮ ତାରିଖରେ ଆବିଦ ହୋସେନଙ୍କ ସହ ସେ ଜର୍ମାନୀ ବନ୍ଦର କିଲେ ଯାତ୍ରା କରିଥିଲେ । ଯାତ୍ରା କରିବା ପୂର୍ବରୁ ସେ ତାଙ୍କ ଭାଇ ଶରତ ବୋଷଙ୍କ ନିକଟକୁ ବଙ୍ଗଳାରେ ନିଜ ହାତରେ ଏକ ଭାବ ପ୍ରବଣ ପତ୍ର ଲେଖିଥିଲେ । ସେ ଲେଖିଥିଲେ ଯେ ସେ ଅତ୍ୟନ୍ତ ବିପଜ୍ଜନକ ଯାତ୍ରା ଆରମ୍ଭ କରିବାକୁ ଯାଉଛନ୍ତି, ଏଥିରେ ସେ ଜୀବିତ ନହୋଇ ପାରନ୍ତି । ସେ ତାଙ୍କର ଜୀବନକାଳ ଭିତରେ ତାଙ୍କୁ ଯେପରି ସ୍ନେହ ଓ ଶ୍ରଦ୍ଧା ଦେଖାଇ ଆସିଛନ୍ତି ଇଉରୋପରେ ଛାଡିଆସିଥିବା ତାଙ୍କ ସହଧର୍ମିଣୀ ଓ କନ୍ୟାଙ୍କ ପ୍ରତି ସେ ସେହିପରି ଶ୍ରଦ୍ଧା ଓ ମମତା ଦେଖାଇବେ ବୋଲି ଅନୁରୋଧ କରିଥିଲେ । ୧୯୪୩ ଫେବୃଆରୀ ୯ ତାରିଖ ଭୋର ସମୟରେ ନେତାଜୀ ସୁଭାଷଚନ୍ଦ୍ର ଓ ଆବିଦ୍ ହୋସେନ ଜାପାନି ବୁଡା ଜାହାଜରେ ବସି ଯାତ୍ରା କରିଥିଲେ । ଏହି ବୁଡାଜାହାଜଟି ଗୋଟିଏ ଛୋଟିଆ ଜାହାଜ, ଚାରିଆଡେ ଡିଜେଲ ତେଲ ଗନ୍ଧରେ ରୁନ୍ଧି ହୋଇଗଲା ଭଳି ଲାଗୁଥିଲା । ଏମିତିକି ଖାଦ୍ୟ ପଦାର୍ଥ ଗୁଡିକ ମଧ୍ୟ ଡିଜେଲ ତେଲ ଗନ୍ଧମୟ । ଏହିଭଳି ପରିବେଶ ଭିତରେ ନେତାଜୀଙ୍କୁ ଦୀର୍ଘ ତିନିମାସ କାଳ ରହିବାକୁ ହୋଇଥିଲା । ବୁଡା ଜାହାଜ ଡେନମାର୍କ

ଜଳଭାଗ ଦେଇ ନରୱେୟ ଉପକୂଳ ଓ ଉତ୍ତର ସାଗର ଦେଇ ଆଟାଲାଣ୍ଟିକ ମହାସାଗରରେ ପହଞ୍ଚିଥିଲା । ଜର୍ମାନୀ ନିୟନ୍ତ୍ରିତ ଜଳଭାଗ ଦେଇ ଗଲାବେଳେ ଏହି ବୁଡାଜାହାଜ ସାଙ୍ଗରେ ଆଉ କେତେଗୁଡ଼ିଏ ବୁଡା ଜାହାଜ ଓ ମାଇନ ସୁଇପର ଜାହାଜ ଯାଇଥିଲା ମାତ୍ର ଏହାପରେ ଶତ୍ରୁ ପକ୍ଷର ଜଳଭାଗ ଦେଇ ଗତି କଲା ତେଣୁ ସବୁବେଳେ ଶତ୍ରୁ ପକ୍ଷର ଆକ୍ରମଣର ଅଶଙ୍କା ରହିଥିଲା । ପ୍ରତିଦିନ ଏହି ବୁଡାଜାହାଜଟି କିଛି ସମୟ ଉପରକୁ ଉଠି ଆସି ବାଟେରି ଚାର୍ଯ୍ୟ କରୁଥିଲା । ବୁଡାଜାହାଜରେ ଯାତ୍ରା କରିବା ପୂର୍ବରୁ ନେତାଜୀଙ୍କୁ ସତର୍କ କରି ଦିଆଯାଇଥିଲା ଯେ ନିରାପଦ ଯାତ୍ରା ପାଇଁ ତାଙ୍କୁ କୌଣସି ପ୍ରତିଶ୍ରୁତି ଦିଆଯାଇ ପାରିବ ନାହିଁ । ନେତାଜୀ ଏହି ବିପଦକୁ ବିନା ସର୍ତ୍ତରେ ଗ୍ରହଣ କରି ନେଇଥିଲେ ।

ବୁଡାଜାହାଜ ଭିତରେ ଅତ୍ୟନ୍ତ ପ୍ରତିକୂଳ ଅବସ୍ଥାରେ ରହିଥିଲେ ମଧ୍ୟ ନେତାଜୀ ଦିନେ ହେଲେ ବିଶ୍ରାମ ନେଇନଥିଲେ ।ସେ ପୂର୍ବ ଏସିଆ ପାଇଁ ଯେଉଁ ପରିକଳ୍ପନା କରିଥିଲେ ତାକୁ ନିର୍ଦ୍ଦିଷ୍ଟ ରୂପରେଖ ଦେବାରେ ସେ ଦିନରାତି ଲାଗିଥିଲେ । ଦିନେ ସେ ଝାନ୍ସିରାଣୀ ମହିଳା ସୈନ୍ୟ ବାହିନୀ ଗଠନ ପାଇଁ ପରିକଳ୍ପନା କରୁଥିଲା ବେଳେ ଶତ୍ରୁପକ୍ଷର ଗୋଟିଏ ଫ୍ରେଟର ଜାହାଜ ଦୃଷ୍ଟି ଗୋଚର ହେଲା ଓ ଏହାକୁ ଆକ୍ରମଣ କରିବା ପାଇଁ ଅର୍ଡର ଦିଆଗଲା । ବୁଡାଜାହାଜ କେଣ୍ଟ୍ରୋଲରେ ଥିବା ଯାନ୍ତ୍ରିକତ୍ରୁଟି ଯୋଗୁ ବୁଡାଜାହାଜଟି ଉପରକୁ ଉଠିଗଲା । ଶତ୍ରୁ ପକ୍ଷର ଫ୍ରେଟ୍ର ଜାହାଜ ଏହାକୁ ଦେଖି ତା ଆଡକୁ ଧକ୍କା ଦେବାକୁ ମାଡିଆସିଲା ସେତେବେଳେ ସମସ୍ତେ ମୃତ୍ୟୁର ଆଶଙ୍କାରେ ରହିଥିଲେ । ହୋସେନ ମଧ୍ୟ ଆତଙ୍କିତ ହୋଇ ପଡିଥିଲେ । ମାତ୍ର ନେତାଜୀ ଅବିଚଳିତ ରହି ହୋସେନଙ୍କୁ କହୁଥିଲେ ''ହୋସେନ ମୁଁ ତମକୁ ଗୋଟିଏ ବିଷୟ ଦିଥର କହି ସାରିଲେଣି ତୁମେ ତାକୁ ନୋଟ୍ କରୁନାହଁ ।'' ଯାହାହେଉ ବୁଡା ଜାହାଜ ସାଙ୍ଗେ ସାଙ୍ଗେ ବୁଡିଗଲା ଓ ତାଉପର ଦେଇ ଫ୍ରେଟର ଜାହାଜଟି ଜୋରରେ ଚାଲିଗଲା ଏବଂ ସେଥିରେ ବୁଡାଜାହାଜକୁ ଜୋରରେ ଧକ୍କା ଲାଗିଲା । ପରେ ବୁଡାଜାହାଜର କ୍ୟାପେଟେନ୍ ଯାତ୍ରୀମାନଙ୍କୁ ସମ୍ବୋଧନ କରି କହିଥିଲେ ଯେ ଆପଣମାନେ ସମସ୍ତେ ବିଶିଷ୍ଟ ଭାରତୀୟ ଯାତ୍ରୀଙ୍କଠାରୁ ଶିକ୍ଷା ଲାଭ କରିବା କଥା ଯେ ଅତ୍ୟନ୍ତ ବିପଜ୍ଜନକ ଏମିତିକି ମୃତ୍ୟୁର ସମ୍ମୁଖୀନ ହେଲାବେଳେ ମଧ୍ୟ ତାଙ୍କ ପରି ଅବିଚଳିତ ଅବସ୍ଥାରେ ରହିବା ଉଚିତ । ନେତାଜୀ ଏହି ସଙ୍କଟ ଜନକ ଅବସ୍ଥାରେ ଯେପରି ଅବିଚଳିତ ରହିଥିଲେ ତାକୁ ଲକ୍ଷ୍ୟ କରି ଜାହାଜର କ୍ୟାପଟେନ ଏହା କହିଥିଲେ ।

ଶତ୍ରୁ ପକ୍ଷର ଜାହାଜ ଓ ବିମାନ ଆକ୍ରମଣର ଆଶଙ୍କା ଭିତରେ ଜର୍ମାନୀର ଏହି ବୁଡାଜାହାଜଟି ନେତାଜୀଙ୍କୁ ନେଇ ଆଟଲାଣ୍ଟିକ ମହାସାଗର ତଳେ ତଳେ ଯାଇ ଉତ୍ତମାଶା ଅନ୍ତରୀପ ଦେଇ ଏପ୍ରିଲ ମାସ ମଧ୍ୟ ଭାଗରେ ଭାରତୀୟ ମହାସାଗରରେ ଆସି ପହଞ୍ଚିଥିଲା । ମାଡାଗାସକର ସାମୁଦ୍ରିକ ମାପରେ ୪୦୦ ମାଇଲ ଦୂରବର୍ତ୍ତୀ ମୋଜାମବିକ୍ ଜଳ ପ୍ରଣାଳୀରେ ଜାପାନି ବୁଡାଜାହାଜ ଆସି ପହଞ୍ଚିବ ବୋଲି ଆଗରୁ ସ୍ଥିର ହୋଇଥିଲା । ସେହିଠାରେ ଏହି ଜର୍ମାନୀ ବୁଡାଜାହାଜ ସହିତ ତାର ଭେଟ ହେବା କଥା ଜାପାନି ବୁଡାଜାହାଜ ତାର ଓଳିକ ଆଗରୁ ଆସି ସେଠାରେ ପହଞ୍ଚି ଯାଇଥିଲା । ଦୁଇଟି ବୁଡାଜାହାଜର ଭେଟାଭେଟି ହେଲା। ମାତ୍ର ସକାଳେ ସମୁଦ୍ରରେ ଉତ୍ତାଳ ତରଙ୍ଗ ଦେଖାଦେଇଥିଲା ତେଣୁ ଦୁଇଟି ଜାହାଜ ପରସ୍ପରର ନିକଟବର୍ତ୍ତୀ ହୋଇ ପାରିନଥିଲା । ଶେଷରେ ବୁଡାଜାହାଜରୁ ଦୁଇଟି ଜର୍ମାନୀ ରବର ବୋଟ କାଢି ସମୁଦ୍ର ଉପରେ ଜାପାନି ବୁଡାଜାହାଜକୁ ଲଗାଇ ରଖା ଗଲା ଓ ଦୁଇଟି ମୋଟା ଦଉଡିରେ ଉପରକୁ ଉଠି ନେତାଜୀ ଓ ହୋସେନ ଜାପାନି ବୁଡା ଜାହାଜରେ ଓହ୍ଲାଇ ଥିଲେ । ସେତେବେଳେ ମଧ୍ୟ ସମୁଦ୍ରରେ ଉତ୍ତାଳ ତରଙ୍ଗ ଓ ଚାରିଆଡେ ସାର୍କ ମାଛ ମୁଣ୍ଡ ଟେକି ଅନେଇ ଥିଲେ । ଏପ୍ରିଲ ୨୪ ତାରିଖରେ ସେମାନେ ଜାପାନି ବୁଡା ଜାହାଜରେ ଓହ୍ଲାଇ ଥିଲେ ଏବଂ ଏହି ସଂବାଦ ବେତାର ବାର୍ତ୍ତା ଯୋଗେ ବର୍ଲିନରେ ପହଞ୍ଚି ଥିଲା ।

ସମଗ୍ର ବିଶ୍ୱ ମହାଯୁଦ୍ଧ ଭିତରେ ଶତ୍ରୁପକ୍ଷ ଜଳଭାଗରେ ବୁଡାଜାହାଜରୁ ବୁଡାଜାହାଜ ସ୍ଥାନାନ୍ତରଣ ଏହା ଥିଲା ଏକମାତ୍ର ଘଟଣା । ଜାପାନି ବୁଡାଜାହାଜ ବ୍ରିଟିଶ ଜଳଭାଗ ଅଞ୍ଚଳ ଛାଡିବା ପରେ ପେନାଙ୍ଗଠାରୁ ଏକ ବେତାର ବାର୍ତ୍ତା ପାଇଥିଲା ଯେ ବୁଡା ଜାହାଜର ଯାତ୍ରୀମାନେ ସୁମାତ୍ରାର ଉତ୍ତରରେ ଅବସ୍ଥିତ ଗୋଟିଏ ନିଛାଟିଆ କ୍ଷୁଦ୍ର ଦ୍ୱୀପ ସାବଙ୍ଗଠାରେ ଓହ୍ଲାଇବେ । ସାବଙ୍ଗଠାରେ ନେତାଜୀ ଓ ହୋସେନ ଓହ୍ଲାଇ କିଛିଦିନ ବିଶ୍ରାମ ନେଲେ ଏବଂ ୧୯୪୩ ମଇ ୧୩ ତାରିଖ ଦିନ ସେମାନେ ବିମାନ ଯୋଗେ ଯାଇ ଟୋକିଓରେ ପହଞ୍ଚି ଇମ୍ପିରିୟାଲ ହୋଟଲରେ ଅବସ୍ଥାନ କରିଥିଲେ । ଜର୍ମାନୀ ବୁଡାଜାହାଜରେ ନେତାଜୀ ଏକମାସ ପର୍ଯ୍ୟନ୍ତ ଅତିବାହିତ କରିବା ସମୟ ଭିତରେ ସେ ଜାପାନ ପ୍ରଧାନମନ୍ତ୍ରୀ ତୋଜୋଙ୍କ ସହିତ ସାକ୍ଷାତ ବେଳେ ଯେଉଁସବୁ ବିଷୟ ତାଙ୍କ ସଙ୍ଗେ ଆଲୋଚନା କରିବେ, ସେସବୁ ବିଷୟ ଚିନ୍ତା କରି ସାରିଥିଲେ । ସେ ପ୍ରଥମେ ଜାପାନର ସଶସ୍ତ୍ର ବାହିନୀ କର୍ମକର୍ତ୍ତାମାନଙ୍କ ସହିତ ଆଲୋଚନା ଶେଷ କରିଥିଲେ । ସେ ଜାପାନର ବିଶିଷ୍ଟ ରାଜନୈତିକ ବ୍ୟକ୍ତି, କୂଟନୈତିକ ବ୍ୟକ୍ତି ଓ ବୁଦ୍ଧିଜୀବୀମାନଙ୍କ ସହିତ ସାକ୍ଷାତ କରି କଥାବାର୍ତ୍ତା କରିଥିଲେ । ଏସବୁ ପ୍ରାଥମିକ ପ୍ରସ୍ତୁତି ପରେ ଯାଇ ନେତାଜୀ ସୁଭାଷଚନ୍ଦ୍ର ତାଙ୍କର ଆଗମନ ବାର୍ତ୍ତା ବିଶ୍ୱବାସୀଙ୍କୁ ଜଣାଇଥିଲେ ।

## ଜାପାନରୁ ଭାରତବାସୀଙ୍କୁ ନେତାଜୀଙ୍କ ନିବେଦନ

ଜାପାନର ପ୍ରଧାନମନ୍ତ୍ରୀ ତୋଜୋଙ୍କ ସହିତ ଦୁଇଥର ସାକ୍ଷାତ କରି ସାରିବାପରେ ତୋଜୋ ନେତାଜୀଙ୍କୁ ଜାପାନ ପାର୍ଲିଆମେଣ୍ଟ ଅଧିବେଶନରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରିଥିଲେ । ନେତାଜୀ ସେଠାରେ ଉପସ୍ଥିତ ଥିଲାବେଳେ ଜାପାନର ପ୍ରଧାନମନ୍ତ୍ରୀ ସ୍ପଷ୍ଟ ଭାବରେ ଭାରତର ସଂପୂର୍ଣ୍ଣ ସ୍ୱାଧୀନତାକୁ ସ୍ୱୀକାର କରୁଥିବା ଘୋଷଣା କରିଥିଲେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଭାରତର ସ୍ୱାଧୀନତାକୁ ସ୍ୱୀକୃତି ଦେବା ଏହା ଏକମାତ୍ର ଘୋଷଣା । ଏହିଭଳି ଘୋଷଣା ହିଟଲରଙ୍କ ଜର୍ମାନୀ ବା ବ୍ରିଟିଶ ସରକାର କରିନଥିଲେ । ଏହି ଘୋଷଣା ପରେ ନେତାଜୀ ଭାରତର ସ୍ୱାଧୀନତା ପାଇଁ ଯେଉଁ ଅଭିଯାନ ଚଳେଇବେ ସେଥିପ୍ରତି ପୂର୍ଣ୍ଣ ସମର୍ଥନ ଜଣାଇବା ନିମନ୍ତେ ଏକ ବେତାର ଭାଷଣ ଦେଇ କହିଥିଲେ "ଆମ ଦେଶବାସୀ ଭାଇ ଓ ଭଉଣୀମାନେ ଯେଉଁ ଅବସ୍ଥାରେ ରହିଛନ୍ତି ସେଥିରେ ତାଙ୍କ ସାଧ୍ୟମତେ ଯାହା କରିବାର କଥା କରୁଛନ୍ତି କିନ୍ତୁ ଆମ ଶତ୍ରୁ ଅତ୍ୟନ୍ତ ନିଷ୍ଠୁର ଓ ହତାଶ ହୋଇ ପଡିଲାଣି ଏବଂ ସେ ସଂପୂର୍ଣ୍ଣ ସଶସ୍ତ୍ର । ଏପରି ଏକ ଦାର୍ଶନିକ ଶକ୍ତି ବିରୁଦ୍ଧରେ ଯେତେ ଆଇନ ଅମାନ୍ୟ କଲେ, ଭଙ୍ଗାରୁଜା କଲେ ବା ବୈପ୍ଳବିକ ସନ୍ତ୍ରାସବାଦ କିଛି ଫଳପ୍ରଦ ହେବନାହିଁ । ଶତ୍ରୁ ଅସ୍ତ୍ର ଧାରଣ କରିଛି ତେଣୁ ତାକୁ ଅସ୍ତ୍ର ଦ୍ୱାରା ହଟାଇବାକୁ ହେବ । ମାତ୍ର ଆମ ଦେଶରେ ସଶସ୍ତ୍ର ବିଦ୍ରୋହ କରିବା ଆଧୁନିକ ଅସ୍ତ୍ରରେ ସଜ୍ଜିତ ବ୍ରିଟିଶ ଶାସନକୁ ହଟାଇବା ସମ୍ଭବ ନୁହେଁ ତେଣୁ ଭାରତ ବାହାରେ ବିଶେଷ ଭାବରେ ପୂର୍ବ ଏସିଆରେ ବାସ କରୁଥିବା ଭାରତୀୟମାନଙ୍କୁ ହିଁ ଏହି କାର୍ଯ୍ୟ କରିବାକୁ ହେବ । ସେହି ସମୟ ଆସି ପହଞ୍ଚି ଗଲାଣି ତେଣୁ ପ୍ରତ୍ୟେକ ଭାରତୀୟ ଯୁଦ୍ଧ କ୍ଷେତ୍ର ଆଡକୁ ଆଗେଇ ଆସନ୍ତୁ । ଯେତେବେଳେ ସ୍ୱାଧୀନତା ପ୍ରିୟ ଭାରତବାସୀଙ୍କ ରକ୍ତ ପ୍ରବାହିତ ହେବ ସେତେବେଳ ଯାଇ ଆମେ ସ୍ୱାଧୀନତା ହାସଲ କରିବା ।

ବିଶିଷ୍ଟ ଭାରତୀୟ ବିପ୍ଳବୀ ରାସବିହାରୀ ବୋଷଙ୍କ ଗହଣରେ ନେତାଜୀ ୧୯୪୩ ଜୁଲାଇ ୩ ତାରିଖରେ ସିଙ୍ଗାପୁରରେ ପହଞ୍ଚିଥିଲେ ଏବଂ ସେଠାରେ ଭାରତୀୟ ଜାତୀୟ ସୈନ୍ୟ ବାହିନୀ ଓ ଭାରତୀୟ ସ୍ୱାଧୀନତା ସଂଘର କର୍ମକର୍ତ୍ତାମାନେ ତାଙ୍କୁ ଉଚ୍ଛ୍ୱସିତ ସଂବର୍ଦ୍ଧନା ଜଣାଇ ଥିଲେ ।

## ଆଜାଦହିନ୍ଦ ଫଉଜର ପ୍ରଧାନ ସେନାପତି ନେତାଜୀ

ନେତାଜୀ ସୁଭାଷଚନ୍ଦ୍ର ପୂର୍ବ ଏସିଆରେ ପହଞ୍ଚିବାର ବର୍ଷକ ପୂର୍ବରୁ ସେଠାରେ ରହୁଥିବା ଦେଶପ୍ରେମୀ ଭାରତୀୟମାନେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ

ଆରମ୍ଭ କରିଥିଲେ । ମୋହନ ସିଂହଙ୍କ ଉଦ୍ୟମରେ ଏକ ଭାରତୀୟ ସ୍ୱାଧୀନ ସୈନ୍ୟ ବାହିନୀ ଗଠିତ ହୋଇଥିଲା । ଜଣେ ଅତ୍ୟନ୍ତ ଦକ୍ଷ ସାହସୀ ଜାପାନି ଅଫିସର ଫୁଜିଆରା ଏହାକୁ ସମର୍ଥନ କରୁଥିଲେ । ଅନ୍ୟ ପକ୍ଷରେ ରାସବିହାରୀ ବୋଷଙ୍କ ଦ୍ୱାରା ଭାରତୀୟ ସ୍ୱାଧୀନ ସଂଘ ପରିଚାଳିତ ହେଉଥିଲା । ଦୁର୍ଭାଗ୍ୟବଶତଃ ନେତୃତ୍ୱ ଓ ଅଭିଜ୍ଞତା ଅଭାବରୁ ଏହି ଆନ୍ଦୋଳନ ବନ୍ଦ ହୋଇ ଯାଇଥିଲା । ନେତାଜୀ ଆସି ପହଞ୍ଚିଲା ବେଳକୁ ଏହି ଆନ୍ଦୋଳନ ଘୋର ଅବ୍ୟବସ୍ଥା ଭିତରେ ଗତି କରୁଥିଲା । ନେତାଜୀ ଆସି ପହଞ୍ଚିବା ପରେ ପୂର୍ବ ଏସିଆର ସମଗ୍ର ସ୍ୱାଧୀନତା ଆନ୍ଦୋଳନକୁ ପୁନର୍ଗଠିତ କରିବାପାଇଁ କଠିନ ଓ ଅବିଶ୍ରାନ୍ତ ପରିଶ୍ରମ କରିଥିଲେ । ୧୯୪୩ ଜୁଲାଇ ମାସ ୪ ତାରିଖରେ ରାସ ବିହାରୀ ବୋଷ ରାଜନୈତିକ ବିଚକ୍ଷଣତା ପ୍ରଦର୍ଶନ କରି ନେତାଜୀଙ୍କୁ ଭାରତୀୟ ସ୍ୱାଧୀନତା ସଂଘର ସିଙ୍ଗାପୁରଠାରେ ଅନୁଷ୍ଠିତ ସାଧାରଣ ଅଧିବେଶନରେ ସମଗ୍ର ଆନ୍ଦୋଳନରେ ନେତୃତ୍ୱ ହସ୍ତାନ୍ତର କରି ଦେଇଥିଲେ । ନେତାଜୀ ତାଙ୍କ ଭାଷଣରେ ଭାରତରେ ଚାଲିଥିବା ବୀରତ୍ୱପୂର୍ଣ୍ଣ ସଂଗ୍ରାମ କଥା ଉଲ୍ଲେଖ କରିଥିଲେ ଏବଂ ପୂର୍ବ ଏସିଆରେ ଭାରତୀୟମାନଙ୍କ ପାଇଁ ଯେଉଁ ବିରାଟ ସଂଗ୍ରାମ ଅପେକ୍ଷା କରି ରହିଛି ତାହା ସ୍ମରଣ କରି ଦେଇଥିଲେ ନେତାଜୀ କହିଥିଲେ ଭାରତର ସ୍ୱାଧୀନତା ସଂଗ୍ରାମରେ ୧୯୪୨ ଅଗଷ୍ଟ ଏକ ଅବିସ୍ମରଣୀୟ ଅଧ୍ୟାୟ ହୋଇ ରହିବ ଏଥିରେ ସ୍ୱାଧୀନତା ସଂଗ୍ରାମ ନିଷ୍କ୍ରିୟ ପ୍ରତିରୋଧରୁ ସକ୍ରିୟ ପ୍ରତିରୋଧ ସ୍ତରକୁ ଯାଇଥିଲା । ବର୍ତ୍ତମାନ ସଂଗ୍ରାମକୁ ପରବର୍ତ୍ତୀ ସ୍ତରକୁ ନେବାକୁ ହେବ । ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏହି ସଂଗଠନ ଅସ୍ତ୍ର ଧାରଣ କରିବ । ତାଙ୍କ ଉଦ୍‌ବୋଧନ ଲୋକଙ୍କ ହୃଦୟକୁ ସ୍ପର୍ଶ କରିଥିଲା ।

## ଦିଲ୍ଲୀଚଲୋ, ଦିଲ୍ଲୀଚଲୋ :

ନେତାଜୀ ଭାରତୀୟ ଜାତୀୟ ସୈନ୍ୟବାହିନୀରେ ଯାହାକୁ କୁହା ଯାଉଥିଲା ''ଆଜାଦହିନ୍ଦ ଫଉଜ''ର ପ୍ରଧାନ ସେନାପତି ଦାୟିତ୍ୱ ବହନ କରିବାପରେ ସଂପୂର୍ଣ୍ଣ ଲକ୍ଷ୍ୟ ହାସଲ ନିମନ୍ତେ ଲୋକଶକ୍ତି, ଅର୍ଥ ଓ ଆବଶ୍ୟକୀୟ ପଦାର୍ଥ ସଂଗ୍ରହ ନିମନ୍ତେ ଅଭିଯାନ ଚଳେଇଲେ । ପୂର୍ବ ଏସିଆସ୍ଥିତ ଭାରତୀୟମାନେ ନେତାଜୀଙ୍କ ସହିତ ପୂର୍ଣ୍ଣପ୍ରାଣରେ ସହଯୋଗ ଓ ସାହାଯ୍ୟ କରିଥିଲେ । ୧୮୫୭ ମସିହାପରେ ଭାରତୀୟମାନେ ଏପରି ଭାବରେ କେବେହେଲେ ସଂଗଠିତ ହୋଇନଥିଲେ । ନାରୀ ଓ ପୁରୁଷ ବୃଦ୍ଧ ଓ ଯୁବକ, ସୈନ୍ୟ, କୃଷକ ଓ ଶ୍ରମିକ ବିପୁଳ ସଂଖ୍ୟାରେ ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ଭାରତମାତାର ମୁକ୍ତି ପାଇଁ ସଂଗଠିତ ହୋଇଥିଲେ ଓ ସମ୍ବଳ ସଂଗ୍ରହ କରିଥିଲେ । ୧୯୪୩ ଜୁଲାଇ ୫ ତାରିଖରେ ନେତାଜୀ ପ୍ରଧାନ ସେନାଧ୍ୟକ୍ଷ ଭାବରେ ଆଜାଦହିନ୍ଦ ଫଉଜ ପ୍ରଥମଥର ପାଇଁ ପରିଦର୍ଶନ କରି କହିଥିଲେ - ''ମୋ ପାଇଁ ଏ ଦିନଟି ସର୍ବାପେକ୍ଷା ଅଧିକ ଗୌରବ ଓ ଗର୍ବର ଦିନ । ତୁମେ ଅସ୍ତ୍ର ବଳରେ ରକ୍ତ ଦେଇ ଭାରତର ସ୍ୱାଧୀନତା ହାସଲ କରିବ । ଭାରତ ସ୍ୱାଧୀନ ହୋଇ ସାରିବା ପରେ ତୁମେ ସ୍ୱାଧୀନ ଭାରତର ସ୍ଥାୟୀ ସୈନ୍ୟବାହିନୀ ରୂପେ ସଂଗଠିତ ହେବ ଏବଂ ଚୀରକାଳ ଭାରତର ସ୍ୱାଧୀନତାକୁ ରକ୍ଷା କରିବା ହେବ ତୁମର କର୍ତ୍ତବ୍ୟ । ଜାତୀୟ ପ୍ରତିରକ୍ଷାକୁ ଆମେ ଏପରି ଭାବରେ ଗଢିବା ଯେ ଆମେ ଆଉ କେବେ ହେଲେ ପରାଧୀନ ହେବା ନାହିଁ । ମୁଁ ତୁମକୁ ପ୍ରତିଶ୍ରୁତି ଦେଉଛି ଯେ ସଂପଦ ବା ବିପଦ ସବୁବେଳେ ମୁଁ ତୁମ ସହିତ ରହିଥିବି । କ୍ଷୁଧା, ତୃଷ୍ଣା, ଦାରିଦ୍ର୍ୟ, ଅଗ୍ରସର ହେବାପାଇଁ ଆଦେଶ ଓ ମୃତ୍ୟୁ ଛଡା ମୁଁ ତୁମକୁ ଅଧିକା କିଛି ଦେଇ ପାରିବି ନାହିଁ, ତୁମ ସଂଗ୍ରାମର ଆହ୍ୱାନହେଉ - ଦିଲ୍ଲୀଚଲୋ, ଦିଲ୍ଲୀଚଲୋ ଆମ ସଂଗ୍ରାମ ଶେଷ ହେବାପରେ କେତେ ଲୋକ ଜୀବିତ ଥିବେ ତାହା ମୁଁ କହି ପାରିବି ନାହିଁ । କିନ୍ତୁ ମୁଁ ଜାଣେ ଯେ ଆମେ ଶେଷରେ ବିଜୟୀ ହେବୁ । ଯିଏ ଶେଷରେ ଜୀବିତ ଥିବେ ସେମାନେ ଭାରତରେ ବ୍ରିଟିଶ ସମାଜର କବର ଉପରେ ଜୟ ଯାତ୍ରା କରି ନ ଯିବା ପର୍ଯ୍ୟନ୍ତ ଆମର ଜୟଯାତ୍ରା ଶେଷହେବ ନାହିଁ ।''

## ଅସ୍ଥାୟୀ ଆଜାଦହିନ୍ଦ ସରକାର ଘୋଷଣା

ଆଜାଦ ହିନ୍ଦ ଫଉଜ ଗଠିତ ହେବାର ତିନିମାସ ଭିତରେ ନେତାଜୀ ସୁଭାଷଚନ୍ଦ୍ର ସମଗ୍ର ଦକ୍ଷିଣପୂର୍ବ ଏସିଆରେ

ବିକ୍ଷିପ୍ତ ହୋଇ ରହିଥିବା ଭାରତୀୟମାନଙ୍କୁ ସଂଗଠିତ କରିବା ନିମନ୍ତେ ଅବିଶ୍ରାନ୍ତ ପରିଶ୍ରମ କରିଥିଲେ । ଏହା ଫଳରେ ଏସିଆ ଦେଶ ମାନଙ୍କ ପରେ ବାସ କରୁଥିବା ଭାରତୀୟମାନଙ୍କ ଭିତରେ ଅପୂର୍ବ ଜାଗରଣ ଦେଖା ଦେଇଥିଲା । ସେମାନେ ଏକ ଶୃଙ୍ଖଳିତ ଅନୁଷ୍ଠାନରେ ପରିଣତ ହୋଇଥିଲେ । ସିଙ୍ଗାପୁରଠାରେ ଏହାର ହେଡକ୍ୱାଟର ସ୍ଥାପିତ ହେଲା । ୧୯୪୩ ଅକ୍ଟୋବର ୨୧ ତାରିଖ ଦିନ ନେତାଜୀ ଅସ୍ଥାୟୀ ଆଜାଦ ହିନ୍ଦ ସରକାର ପ୍ରତିଷ୍ଠା ଘୋଷଣା କରିଥିଲେ । ଏହି ଘୋଷଣା ପତ୍ର ସ୍ୱାକ୍ଷର କରିଥିଲେ - ସୁଭାଷ ଚନ୍ଦ୍ର ବୋଷ (ରାଷ୍ଟ୍ରମୁଖ୍ୟ, ପ୍ରଧାନମନ୍ତ୍ରୀ, ଯୁଦ୍ଧ ଓ ବୈଦେଶିକ ବିଭାଗ), କାପ୍‌ଟେନ୍ ଶ୍ରୀମତୀ ଲକ୍ଷ୍ମୀ (ମହିଳା ବିଭାଗ), ଲେ.କ. ଏ.ସି.ଚାଟର୍ଜି (ଅର୍ଥ) ଏସ. ଏ. ଆୟର (ପ୍ରକାଶନ ଓ ପ୍ରଚାର) ଲେ.କ. ଜେ.କେ. ଭୋନ୍‌ସ୍ଲେ, ଲେ.କ. ଗୁଲଜାରା ସିଂହ, ଲେ.କ. ଏମ. ଜେଡ୍. କିଆନି, ଲେ.କ. ଲୋକନାଥନ, ଲେ.କ ଏହସାନ କାଦିର, ଲେ.କ. ସାହାନଓ୍ୱାଜଖାଁ (ସୈନ୍ୟବାହିନୀର ପ୍ରତିନିଧିମାନେ) ରାସବିହାରୀ ବୋଷ (ସର୍ବୋଚ୍ଚ ଉପଦେଷ୍ଟା) । ସେଦିନ ସେ ଯେଉଁ ଶପଥ ପତ୍ର ପାଠ କରାଇଥିଲେ ସେଥିରେ ଥିଲା - ମୁଁ ଈଶ୍ୱରଙ୍କ ନାମରେ ଭାରତରେ ୩୮ କୋଟି ଲୋକଙ୍କ ବନ୍ଧନ ମୁକ୍ତିର ଶପଥ ଗ୍ରହଣ କରୁଛି । ଜୀବନର ଶେଷ ନିଶ୍ୱାସ ଥିବା ପର୍ଯ୍ୟନ୍ତ ସ୍ୱାଧୀନତା ସଂଗ୍ରାମ ମୁଁ କରିଯିବି, ମୁଁ ସବୁବେଳେ ଭାରତର ସେବକ ହୋଇ ରହିବି । ଭାରତର ୩୮ କୋଟି ଭାଇ ଭଉଣୀଙ୍କ ମଙ୍ଗଳ ବିଧାନହିଁ ହେବ ମୋର ପରମ କର୍ତ୍ତବ୍ୟ । ଭାରତର ସ୍ୱାଧୀନତା ଲାଭପରେ ଭାରତର ସ୍ୱାଧୀନତା ରକ୍ଷା ପାଇଁ ମୁଁ ମୋର ଶେଷ ରକ୍ତ ବିନ୍ଦୁ ଦେବାପାଇଁ ମୁଁ ପ୍ରସ୍ତୁତ ରହିବି । ସେଦିନ ନେତାଜୀ ଏହି ଶପଥ ପତ୍ର ପାଠ କଲାବେଳେ ତାଙ୍କ ହୃଦୟ ଏପରି ଆବେଗ ପୂର୍ଣ୍ଣ ହୋଇ ଉଠିଥିଲା ଯେ ସେ କାନ୍ଦି ପକାଇ ଥିଲେ ।

୧୯୪୩ ଅକ୍ଟୋବର ୨୨ ତାରିଖଦିନ ନେତାଜୀ ଆନୁଷ୍ଠାନିକ ଭାବରେ ଝାନ୍ସିରାଣୀ ବାହିନୀ ଉଦ୍‌ଘାଟନ କରିଥିଲେ । ଆଜାଦହିନ୍ଦ ଫଉଜର ଏହା ଥିଲା ନାରୀ ସୈନ୍ୟବାହିନୀ । ଆଜାଦହିନ୍ଦ ଅସ୍ଥାୟୀ ସରକାରଙ୍କୁ ଜାପାନ, ଜର୍ମାନୀ ଓ ଇଟାଲି ସମେତ ବିଶ୍ୱର ୯ଟି ଦେଶ ସ୍ୱୀକୃତି ପ୍ରଦାନ କରିଥିଲେ । ଏହି ସରକାର ଘୋଷଣା କରିଥିଲେ ଯେ ଯୁଦ୍ଧ ପରେ ଭାରତର ଜନସାଧାରଣଙ୍କ ସମ୍ମତି କ୍ରମେ ସ୍ଥାୟୀ ଭାରତ ସରକାର ଗଠିତ ହେବ ।

୧୯୪୩ ନଭେମ୍ବର ମାସରେ ଟୋକିଓଠାରେ ଅନୁଷ୍ଠିତ ବୃହତ୍ତର ଏସିଆ ଦେଶ ମହା ସମ୍ମିଳନୀରେ ଉଦ୍‌ବୋଧନ ଦେଇ ନେତାଜୀ ପରାଧୀନ ଦେଶମାନଙ୍କ ଦୃଷ୍ଟିକୋଣରୁ ଆନ୍ତର୍ଜାତୀୟ ପରିସ୍ଥିତିର ବିଶ୍ଳେଷଣ କରି କହିଥିଲେ ଯେ ନ୍ୟାୟ ବିଚାର, ରାଷ୍ଟ୍ରୀୟ ସାର୍ବଭୌମ କ୍ଷମତା, ପରସ୍ପର ସାହାଯ୍ୟ ଓ ସହଯୋଗ ଭିତ୍ତି ଉପରେ ନୂତନ ବିଶ୍ୱ ପ୍ରତିଷ୍ଠିତ ହେବା ବାଞ୍ଛନୀୟ ।

ଏହି ସମ୍ମିଳନୀ ଶେଷରେ ବର୍ମାର ବାମ ଏକ ପ୍ରସ୍ତାବ ଆଗତ କରି ଭାରତର ସ୍ୱାଧୀନତା ସଂଗ୍ରାମ ପ୍ରତି ପୂର୍ଣ୍ଣ ସମର୍ଥନ ଜଣାଇଥିଲେ ଏବଂ ଏହି ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ଶେଷରେ ଜାପାନର ପ୍ରଧାନମନ୍ତ୍ରୀ ଘୋଷଣା କରିଥିଲେ ଯେ ଜାପାନର ସାମରିକ କର୍ତ୍ତୃତ୍ୱରେ ରହିଥିବା ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ଦୁଇଟିକୁ ଅସ୍ଥାୟୀ ଭାରତ ସରକାରଙ୍କୁ ହସ୍ତାନ୍ତର କରି ଦିଆଯିବ । ନେତାଜୀ ସିଙ୍ଗାପୁର ଫେରିବା ପୂର୍ବରୁ ଚୀନ, ଫିଲିପାଇନ ଓ ଇଣ୍ଡୋନେସିଆ ଦେଶ ଗସ୍ତ କରିଥିଲେ । ଗୋଟିଏ ଦେଶର ମୁଖ୍ୟ ଶାସନ କର୍ତ୍ତା ଭାବରେ ନେତାଜୀ ସେ ଦେଶର ଶାସନକର୍ତ୍ତାଙ୍କ ଦ୍ୱାରା ସମ୍ମାନିତ ହୋଇଥିଲେ । ଚୀନଦେଶର ନାନକିଙ୍ଗଠାରେ ସେ ଚୀନର ମହାନ ବିପ୍ଳବୀ ନେତା ସାନ୍‌ଇୟାତ ସେନଙ୍କ ସ୍ମୃତିପୀଠକୁ ଯାଇ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ ।

### 'ସ୍ୱରାଜ' ଓ 'ସହୀଦ' ଦ୍ୱୀପରେ ନେତାଜୀ :

୧୯୪୩ ମସିହା ଡିସେମ୍ବର ମାସରେ ନେତାଜୀ ସୁଭାଷ ଚନ୍ଦ୍ର ଆଣ୍ଡାମାନ ଦ୍ୱୀପପୁଞ୍ଜ ପରିଦର୍ଶନ କରିଥିଲେ ଓ ଅସ୍ଥାୟୀ ଭାରତ ସରକାରଙ୍କ ପକ୍ଷରୁ ଏହାର ଶାସନ

ଦାୟିତ୍ୱ ଜାପାନି ସାମରିକ କର୍ତ୍ତୃପକ୍ଷଙ୍କଠାରୁ ଗ୍ରହଣ କରିଥିଲେ । ନେତାଜୀ ଏଠାରେ ଜିମଖାନା ପଡିଆରେ ବିରାଟ ଜନସମାବେଶରେ ଭାରତର ଜାତୀୟ ପତାକା ଉତ୍ତୋଳନ କରିଥିଲେ । ସେ ଆଣ୍ଡାମାନ ଦ୍ୱୀପର ନାମ 'ସହୀଦ' ଦ୍ୱୀପ ଓ ନିକୋବରର ନାମ ସ୍ୱରାଜ ଦ୍ୱୀପ ହେବ ବୋଲି ଘୋଷଣା କରିଥିଲେ । ଆଣ୍ଡାମାନରେ ଅବସ୍ଥିତ ଯେଉଁ ସେଲୁଲାର ଜେଲ ଭିତରେ ବ୍ରିଟିଶ ସରକାର ବହୁ ଭାରତୀୟ ସ୍ୱାଧୀନତା ସଂଗ୍ରାମୀଙ୍କୁ ଦୁଃଖ ଯନ୍ତ୍ରଣା ଦେଇଥିଲେ ସେ ତାହା ପରିଦର୍ଶନ କରିଥିଲେ ।

୧୯୪୪ ଜାନୁଆରୀ ମାସରେଭାରତର ସୀମାନ୍ତବର୍ତ୍ତୀ ଅଞ୍ଚଳ ଆଡକୁ ଅଗ୍ରସର ହେବା ନିମନ୍ତେ ଭାରତୀୟ ସୈନ୍ୟଙ୍କୁ ପ୍ରସ୍ତୁତ କରିବାପାଇଁ ଅସ୍ଥାୟୀ ଭାରତ ସରକାରର ସଦର ମହକୁମାକୁ ସିଙ୍ଗାପୁରଠାରୁ ରେଙ୍ଗୁନକୁ ଉଠାଇ ନେଇଥିଲେ । ୧୯୪୪ ଫେବୃଆରୀ ମାସରେ ଆରାକାନ ଯୁଦ୍ଧ କ୍ଷେତ୍ରରେ ଚଟଗ୍ରାମ ରାସ୍ତାରେ ଭାରତୀୟ ସୈନ୍ୟ ଅଗ୍ରସର ହୋଇ ଶତ୍ରୁପକ୍ଷ ଅପେକ୍ଷା ଅଧିକ ଶକ୍ତିଶାଳୀ ବୋଲି ନିଜକୁ ପ୍ରମାଣିତ କରିଥିବାରୁ ଏଥିରେ ନେତାଜୀ ବିଶେଷ ସନ୍ତୋଷ ପ୍ରକାଶ କରିଥିଲେ । ଏହାପରେ ଯୁଦ୍ଧ କ୍ଷେତ୍ରରେ ଜାପାନି ସୈନ୍ୟବାହିନୀଙ୍କ ସହିତ ଭାରତୀୟ ସୈନ୍ୟବାହିନୀ ଏକାସାଙ୍ଗରେ ଯୁଦ୍ଧ କରିବା ସଂପର୍କରେ ନେତାଜୀ ଜାପାନି କର୍ତ୍ତୃପକ୍ଷଙ୍କ ସହିତ ଦୀର୍ଘ ଆଲୋଚନା ପରେ ନିଷ୍ପତ୍ତି କରାଯାଇଥିଲା ଯେ ଆଜାଦହିନ୍ଦ ଫଉଜର ଏକ ନମ୍ବର ଡିଭିଜନ ଜାପାନି ସୈନ୍ୟଙ୍କ ସହିତ ମିଶି ଯୁଦ୍ଧ କରିବେ । ଭାରତୀୟ ସୈନ୍ୟଙ୍କ ସଂଖ୍ୟା ଏକ ଡିଭିଜନରୁ କମ୍ ହେବନାହିଁ । ଭାରତୀୟ ସୈନ୍ୟ ନିଜ ସେନାପତିଙ୍କ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରିବେ । ମାତ୍ର ସେମାନେ ସମଗ୍ର ଭାବରେ ଜାପାନି ସାମରିକ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶ ଅନୁସରଣ କରି କାର୍ଯ୍ୟ କରିବେ । ସେମାନେ ଜାପାନି ସୈନ୍ୟଙ୍କ ମିତ୍ର ପକ୍ଷ ଭଳି ଯୁଦ୍ଧ କରିବେ ଏବଂ ଜାପାନି ସୈନ୍ୟଙ୍କ ସହିତ ସେମାନଙ୍କର ସମାନ ପାହିଆ ରହିବ ଅସ୍ଥାୟୀ ଭାରତ ସରକାରଙ୍କ ସାମରିକ ଆଇନ ଓ ନିୟମାବଳି ଅନୁଯାୟୀ ''ଆଜାଦହିନ୍ଦ ଫଉଜ'' ପରିଚାଳିତ ହେବ । ଯୁଦ୍ଧରେ ଭାରତର ଯେଉଁସବୁ ଅଞ୍ଚଳ ମୁକ୍ତ ହେବ ସେସବୁ ଅସ୍ଥାୟୀ ଭାରତ ସରକାରଙ୍କ ଶାସନାଧୀନ ହେବ । ଅସ୍ଥାୟୀ ଭାରତ ସରକାରଙ୍କ ମୁଦ୍ରା ଓ ଷ୍ଟାମ୍ପ ସେହି ଅଞ୍ଚଳରେ ପ୍ରଚଳିତ ହେବ । ଅର୍ଥନୈତିକ କାରବାର ପାଇଁ ଅସ୍ଥାୟୀ ଭାରତ ସରକାର ରେଙ୍ଗୁନଠାରେ ଏକ ଆଜାଦହିନ୍ଦ ବ୍ୟାଙ୍କ ପ୍ରତିଷ୍ଠା କରିଥିଲେ । ଏହି ସମୟରେ ଜାପାନ ସରକାର ନେତାଜୀ ସୁଭାଷଚନ୍ଦ୍ରଙ୍କୁ Chrysanthemum ବେସାମରିକ ଉପାଧିରେ ଭୂଷିତ କରିବା ପାଇଁ ଚାହିଁଥିଲେ । ଏହା ଥିଲା ଜାପାନ ସରକାରଙ୍କ ଶ୍ରେଷ୍ଠ ବେସାମରିକ ଉପାଧି ମାତ୍ର ଭାରତ ସ୍ୱାଧୀନ ହେବା ପୂର୍ବରୁ ସେ ଏହାକୁ ଗ୍ରହଣ କରିବାକୁ ରାଜି ହୋଇ ନଥିଲେ ।

## ଭାରତ ଭୂମିରେ ଆଜାଦହିନ୍ଦ ଫଉଜଙ୍କ ପ୍ରବେଶ

ଆଜାଦହିନ୍ଦ ଫଉଜ ଯୁଦ୍ଧ କ୍ଷେତ୍ରକୁ ବିଦାୟ ନେଇଯିବା ବେଳେ ନେତାଜୀ ସେମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ - ''ରକ୍ତ ରକ୍ତକୁ ଆହ୍ୱାନ କରୁଛି ଉଠ ଆମର ଆଉ ସମୟ ନାହିଁ, ଅସ୍ତ୍ରଧାରଣ କର । ଆମର ଆଗରେ ଯେଉଁ ରାସ୍ତା ଦେଖାଯାଉଛି ତାକୁ ଆମ ପୂର୍ବ ପୁରୁଷମାନେ ନିର୍ମାଣ କରିଥିଲେ । ଆମେ ସେହି ରାସ୍ତାରେ ଆଗେଇ ଯିବା । ଶତ୍ରୁ ସୈନ୍ୟଙ୍କୁ ପରାସ୍ତ କରି ଆମକୁ ଅଗ୍ରସର ହେବାକୁ ପଡିବ କିମ୍ବା ଯଦି ଭାଗବାନଙ୍କ ଇଚ୍ଛାଥିବ ଆମେ ସହୀଦ ହୋଇଯିବା । ଯେଉଁ ରାସ୍ତା ଆମ ସୈନ୍ୟବାହିନୀକୁ ନେଇ ଦିଲ୍ଲୀରେ ପହଞ୍ଚାଇ ଦେବ ମୃତ୍ୟୁବେଳେ ଆମେ ସେହି ରାସ୍ତାକୁ ଆଲିଙ୍ଗନ କରିବା ।'' ୧୯୪୪ ମାର୍ଚ୍ଚମାସ ୧୯ ତାରିଖ ଦିନ ଆଜାଦହିନ୍ଦ ଫଉଜ ଭାରତ ସୀମାନ୍ତ ପାର ହୋଇଗଲେ । କେନେଡି ଏରିଆ ଦେଇ ସେମାନେ ଯାଇଥିଲେ । ଇମ୍ଫାଲ ଅଭିଯାନରେ ଆଗେଇ ଯିବା ପୂର୍ବରୁ ଆଜାଦହିନ୍ଦ ସୈନ୍ୟବାହିନୀ ସେମାନଙ୍କ ପବିତ୍ର ଜନ୍ମଭୂମି ଉପରେ ଭାରତର ଜାତୀୟ ପତାକା ଉତ୍ତୋଳନ କରିଥିଲେ । ସେମାନେ ଭାରତ ଭୂମିକୁ ସ୍ପର୍ଶ କରିବାପାଇଁ ନଇଁ

ପଡିଥିଲେ । ବ୍ରିଟିଶ ଶାସନରୁ ମୁକ୍ତ ଭାରତୀୟ ଅଞ୍ଚଳ ପାଇଁ ଅସ୍ଥାୟୀ ଭାରତ ସରକାର ମନ୍ତ୍ରୀ ଲେ.କ. ଏ.ସି. ଚାଟାର୍ଜୀ ଶାସକ ରୂପେ ନିଯୁକ୍ତ ହୋଇଥିଲେ । ଜାପାନି ସୈନ୍ୟଚାରି ଆଡୁ ରାସ୍ତାକାଟି ଦେଇ ଇମ୍ଫାଲ ଦଖଲ କରିନେବା ପାଇଁ ଯେଉଁ ଯୋଜନା କରିଥିଲେ ସେଥିରେ ସଫଳ ହୋଇଥିଲେ । ଇମ୍ଫାଲ ଚାରିଆଡୁ ବିଛିନ୍ନ ହୋଇଯାଇଥିଲା ମାତ୍ର ବ୍ରିଟିଶ ସୈନ୍ୟବାହିନୀ ତାଙ୍କ ସୈନ୍ୟଙ୍କୁ ବିମାନଯୋଗେ ଅସ୍ତ୍ରଶସ୍ତ୍ର ଓ ଖାଦ୍ୟପଦାର୍ଥ ଯୋଗାଇ ଦେବାରୁ ଇମ୍ଫାଲ ପତନ ହେଲା ନାହିଁ କି ବ୍ରିଟିଶ ସୈନ୍ୟ ଆତ୍ମ ସମର୍ପଣ କଲେ ନାହିଁ । ଦୁର୍ଯୋଗକୁ ସେହି ସମୟରେ ଘୋର ବର୍ଷା ହୋଇଯିବା ଯୋଗୁ ପଛପଟ ରାସ୍ତା କର୍ଦମାକ୍ତ ଓ ଜଳମୟ ହୋଇଗଲା ତେଣୁ ଖାଦ୍ୟପଦାର୍ଥ ତାଙ୍କ ପାଖରେ ପହଞ୍ଚି ପାରିଲା ନାହିଁ । ଏହି ଅବସ୍ଥାରେ ଯୁଦ୍ଧ କ୍ଷେତ୍ରରେ ଆଗେଇବା ସମ୍ଭବ ହେଲା ନାହିଁ । ଶେଷରେ ଜାପାନି ଓ ଆଜାଦ ହିନ୍ଦ ସୈନ୍ୟଙ୍କୁ ଫେରିଯିବା ପାଇଁ ନିର୍ଦ୍ଦେଶ ଦିଆଯାଇ ଥିଲା ।

## ପୂର୍ବ ପ୍ରାଚ୍ୟ ଯୁଦ୍ଧର ନୂଆ ମୋଡ଼

ଜାପାନି ଓ ଆଜାଦହିନ୍ଦ ସୈନ୍ୟବାହିନୀ ଇମ୍ଫାଲ ଯୁଦ୍ଧ କ୍ଷେତ୍ରରୁ ଫେରି ଆସିବା ଫଳରେ ଦକ୍ଷିଣ ପୂର୍ବ ଏସିଆ ଯୁଦ୍ଧ ନୂଆ ମୋଡ଼ ନେଲା । ଏହା ଥିଲା ଏକ ନିଷ୍ଠୁର ପ୍ରତ୍ୟାବର୍ତ୍ତନ । ଫେରିବା ବାଟରେ ବହୁ ରୁଗ୍ଣ ଓ ଆହତ ସୈନ୍ୟ ପ୍ରାଣ ହରାଇଲେ ମାତ୍ର ମାଣ୍ଡାଲେରେ ପହଞ୍ଚିଥିବା ସୈନ୍ୟମାନଙ୍କୁ ଖାଦ୍ୟ ଓ ପୋଷାକ ପତ୍ର ଯୋଗାଇ ଦିଆଯାଇଥିଲା । ସେମାନଙ୍କ ପାଇଁ ସ୍ୱତନ୍ତ୍ର ଡାକ୍ତରଖାଦ୍ୟ ଖୋଲା ଯାଇଥିଲା । ଅଗଷ୍ଟ ୧୨ ତାରିଖରେ ଟୋକିଓ ରେଡିଓରେ ଇମ୍ଫାଲ ଯୁଦ୍ଧ କ୍ଷେତ୍ରରୁ ପ୍ରତ୍ୟାବର୍ତ୍ତନ ସଂବାଦ ସରକାରୀ ଭାବରେ ଘୋଷଣା କରାଯାଇଥିଲା । ଦୁଇଦିନ ପରେ ନେତାଜୀ ଅଜାଦହିନ୍ଦ ଫଉଜ ଅଫିସର ଓ ସୈନ୍ୟବାହିନୀଙ୍କ ଉଦ୍ଦେଶ୍ୟରେ ଏକ ନିର୍ଦ୍ଦେଶନାମା ଜାରି କରି କହିଥିଲେ ଯେ ଆଜାଦହିନ୍ଦ ଫଉଜ ଇମ୍ଫାଲ ଯୁଦ୍ଧ କ୍ଷେତ୍ରରେ ବୀରତ୍ୱର ସହିତ ଲଢେଇ କରିଥିଲେ । ତାଙ୍କଠାରୁ ସେଠାରେ ଏକଜୁଟ ହୋଇଥିବା ବହୁ ସଂଖ୍ୟକ ଅଧିକ ବ୍ରିଟିଶ ସୈନ୍ୟଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ପରାସ୍ତ କରିଥିଲେ ମଧ୍ୟ ଅପ୍ରତ୍ୟାଶିତ ଭାବରେ ବର୍ଷା ଯୋଗୁ ସେମାନଙ୍କୁ ବିଜୟ ଲାଭରୁ ବଞ୍ଚିତ ହେବାକୁ ପଡିଲା । ସେମାନେ ପ୍ରତିରକ୍ଷା ପାଇଁ ଫେରି ଆସିଥିଲେ ମଧ୍ୟ ସେମାନଙ୍କୁ ଯୁଦ୍ଧର ପରବର୍ତ୍ତୀ ପର୍ଯ୍ୟାୟ ପାଇଁ ପ୍ରସ୍ତୁତ ହେବାକୁ ପଡିବ ଏବଂ ଗତ ଯୁଦ୍ଧରୁ ଶିକ୍ଷା କରିବାକୁ ହେବ । ଶେଷରେ ଆମର ବିଜୟ ସୁନିଶ୍ଚିତ ଯୁଦ୍ଧ ଚଳେଇବା ପାଇଁ ନେତାଜୀ ଦୃଢ ସଂକଳ୍ପ ରହିଥିବା ଦେଖି ଜାପାନ ସରକାରଙ୍କର ତାଙ୍କ ପ୍ରତି ସମ୍ମାନ ବୃଦ୍ଧି ପାଇଥିଲା ଏବଂ ସେମାନେ ତାଙ୍କୁ ସବୁ ପ୍ରକାରେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇଥିଲେ ।

ନେତାଜୀଙ୍କ ଦୃଢ ବିଶ୍ୱାସ ଥିଲା ଯେ ଆଜାଦହିନ୍ଦ ଫଉଜ ବର୍ମାରେ ବ୍ରିଟିଶ ସୈନ୍ୟବାହିନୀଙ୍କ ସହିତ ଯୁଦ୍ଧ ଲଗେଇ ରଖିଲେ ତାହା ଶେଷରେ ଏପରି ପରସ୍ଥିତି ସୃଷ୍ଟି କରିବ ଯେ ବ୍ରିଟିଶ ସରକାର ଭାରତରେ ତାଙ୍କ ଶାସନ ରକ୍ଷା କରିବା ପାଇଁ ବ୍ରିଟିଶ ଭାରତୀୟ ସୈନ୍ୟବାହିନୀଙ୍କ ଉପରେ ଆଉ ନିର୍ଭର କରିପାରିବେ ନାହିଁ । ଭାରତୀୟ ଜାତୀୟ ବାହିନୀଙ୍କ ଲାଲକିଲାରେ ବିଚାର ବେଳେ ତାହାହିଁ ସତ୍ୟରେ ପରିଣତ ହେଲା । ୧୯୪୪ ମସିହା ଶେଷଭାଗରେ ଜାପାନର ପ୍ରଧାନମନ୍ତ୍ରୀ ଓ ଜାପାନର ପ୍ରଧାନ ସେନାପତିଙ୍କର ବଦଳି ହୋଇଗଲା । ନେତାଜୀ ନୂଆ ପ୍ରଧାନମନ୍ତ୍ରୀ କୁନିଆକି କୋଇସେ ଓ ନୂଆ ସେନାଧ୍ୟକ୍ଷ ଜେନେରାଲ କିମୁରାଙ୍କ ସହିତ ସାକ୍ଷାତ କରି ଭବିଷ୍ୟତ ଯୁଦ୍ଧ କୌଶଳ ସଂପର୍କରେ ବିସ୍ତୃତ ଆଲୋଚନା କରିଥିଲେ । ୧୯୪୪ ଜୁଲାଇ ମାସରେ ନେତାଜୀ ରେଙ୍ଗୁନରୁ ଗାନ୍ଧିଜୀଙ୍କୁ ସମ୍ବୋଧନ କରି ଏକ ବେତାର ଭାଷଣରେ କହିଥିଲେ ଯେ - "ମୋର ଦୃଢ ବିଶ୍ୱାସ ଯେ ବ୍ରିଟିଶ ସରକାର କଦାପି ଭାରତର ସ୍ୱାଧୀନତାକୁ ସ୍ୱୀକାର କରିବନାହିଁ । ଆମେ ଯଦି ସ୍ୱାଧୀନତା ଚାହୁଁ ତାହେଲେ ଆମକୁ ରକ୍ତନଦୀ ଭିତର ଦେଇ ଯିବାକୁ ହେବ । ମୁଁ ଯାହା କରିଛି ଆମ ଦେଶର ମଙ୍ଗଳପାଇଁ ଏବଂ ଦେଶର ସମ୍ମାନ ବୃଦ୍ଧି କରିବା ପାଇଁ କରିଛି । ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଛି । ଆଜାଦହିନ୍ଦ ଫଉଜ ବର୍ତ୍ତମାନ ଭାରତ ଭୂମି ଉପରେ ଯୁଦ୍ଧ କରୁଛନ୍ତି ଏବଂ ବ୍ରିଟିଶ

ଶାସନକୁ ଭାରତରୁ ଲୋପ କରିବା ପର୍ଯ୍ୟନ୍ତ ଲଢିବେ । ଜାତିର ପିତା ଏହି ପବିତ୍ର ମୁହୂର୍ତ୍ତରେ ଆମେ ଆପଣଙ୍କ ଆଶୀର୍ବାଦ ଭିକ୍ଷା କରୁଛୁ ।

## ବର୍ମାରୁ ଫେରି ଆସିବାବେଳେ ନେତାଜୀଙ୍କ ଶେଷ ବାର୍ତ୍ତା

୧୯୪୫ ମସିହା ଏପ୍ରିଲ ମାସରେ ବ୍ରିଟିଶ ସୈନ୍ୟ ବାହିନୀ ରେଙ୍ଗୁନ ଆଡକୁ ଦ୍ରୁତ ଗତିରେ ଅଗ୍ରଗତି କଲେ । ଜାପାନି ସାମରିକ କର୍ତ୍ତୃପକ୍ଷ ଏହାକୁ ଗୁରୁତର ପରିସ୍ଥିତିବୋଲି ବିଚାର କରି ରେଙ୍ଗୁନ ଖାଲି କରି ଚାଲି ଆସିବା ପାଇଁ ନିଷ୍ପତ୍ତି କଲେ । ଏପ୍ରିଲ ମଧ୍ୟ ଭାଗରେ ଜାପାନର ପ୍ରଧାନ ସେନାପତି ନେତାଜୀଙ୍କୁ ବିମାନ ଯୋଗେ ରେଙ୍ଗୁନରୁ ଚାଲିଯିବା ପାଇଁ ଜଣାଇଦେଲେ । ମାତ୍ର ନେତାଜୀ ଏଥିରେ ରାଜି ହୋଇନଥିଲେ । ରେଙ୍ଗୁନରେ ରହୁଥିବା ଭାରତୀୟମାନଙ୍କ ନିରାପତ୍ତା ବ୍ୟବସ୍ଥା କରିସାରି ଏବଂ ଝାନ୍ସିରାଣୀ ବାହିନୀର ମହିଳାମାନଙ୍କୁ ସେମାନଙ୍କ ଘରେ ନେଇ ଛାଡିଆସିବା ବ୍ୟବସ୍ଥା କରିସାରିବା ପରେ ଯାଇ ସେ ବର୍ମାରୁ ଯିବେ ବୋଲି ମନସ୍ଥ କରିଥିଲେ ଏବଂ ସେଥିପାଇଁ ପ୍ରଥମେ ବ୍ୟବସ୍ଥା କରିଥିଲେ । ଝାନ୍ସିରାଣୀ ବାହିନୀର ମହିଳାମାନଙ୍କୁ ଛାଡିଦେଇ ଆସିବାପାଇଁ ଯାନବାହନ ବ୍ୟବସ୍ଥା କରାଯାଇଥିଲା ଓ ସେମାନଙ୍କ ସହିତ ଆଜାଦହିନ୍ଦ ଫଉଜର କେତେକ ସୈନିକ ଛାଡିଦେଇ ଆସିବାପାଇଁ ତାଙ୍କ ସାଙ୍ଗରେ ଯାଇଥିଲେ ।

ରେଙ୍ଗୁନରୁ ଆସିବା ପୂର୍ବରୁ ବର୍ମା ଅଧିବାସୀ ଓ ଭାରତୀୟମାନଙ୍କୁ ବିଦାୟ ବାର୍ତ୍ତାରେ ନେତାଜୀ କହିଥିଲେ- ''ଆମେ ଯୁଦ୍ଧର ପ୍ରଥମ ପର୍ଯ୍ୟାୟରେ ପରାସ୍ତ ହୋଇଛୁ କିନ୍ତୁ ଏହା ସ୍ୱାଧୀନତା ସଂଗ୍ରାମର କେବଳ ପ୍ରଥମ ପର୍ଯ୍ୟାୟ । ଆହୁରି ବହୁବାର ସଂଗ୍ରାମ କରିବାକୁ ହେବ । ଭାରତର ଶେଷ ସ୍ୱାଧୀନତା ସଂଗ୍ରାମର ଇତିହାସ ରଚିତ ହେଲାବେଳେ ବର୍ମାରେ ଥିବା ଭାରତୀୟମାନେ ସେଥିରେ ଉଚ୍ଚସ୍ଥାନର ଅଧିକାରୀ ହେବେ । ସ୍ୱାଧୀନତା ସଂଗ୍ରାମ ଚଳେଇ ରଖିବାକୁ ହିଁ ମୁଁ ବର୍ମାରୁ ଯାଉଛି । ଭାରତ ଅଚୀରେ ସ୍ୱାଧୀନତା ହାସଲ କରିବ ବୋଲି ମୋର ଅବିଚଳିତ ବିଶ୍ୱାସ୍ ରହିଛି ।''

ଆଜାଦହିନ୍ଦ ସୈନ୍ୟବାହିନୀକୁ ଏକ ନିର୍ଦ୍ଦେଶ ନାମାରେ ନେତାଜୀ କହିଥିଲେ । - ''ଏହି ସଙ୍କଟ ଜନକ ସମୟରେ ମୁଁ ତୁମମାନଙ୍କୁ ଗୋଟିଏ ମାତ୍ର ନିର୍ଦ୍ଦେଶ ଦେବି ଏବଂ ତାହେଲା - ତୁମ୍ଭେମାନେ ଯଦି ସାମୟିକ ଭାବରେ ଫେରିଯାଉଛ ତାହେଲେ ତ୍ରିରଙ୍ଗ ପତାକାକୁ ଉଡାଇ ସଂଗ୍ରାମ କରି ଚାଲିଯାଅ, ଯୋଦ୍ଧା ଭାବରେ ଯାଅ, ସମ୍ମାନ ଓ ଶୃଙ୍ଖଳାର ସହିତ ଯାଅ । ଭବିଷ୍ୟତ ଭାରତବାସୀଙ୍କ ସନ୍ତାନ ଆଉ ଦାସ ହୋଇ ଜନ୍ମ ନହୋଇ ସ୍ୱାଧୀନ ମାନବ ହୋଇ ଜନ୍ମଗ୍ରହଣ କରିବେ । ସେମାନେ ତୁମ୍ଭମାନଙ୍କୁ ଆଶୀର୍ବାଦ କରିବେ ଏବଂ ବିଶ୍ୱବାସୀଙ୍କ ନିକଟରେ ଗର୍ବର ସହିତ ଘୋଷଣା କରିବେ ଯେ ସେମାନଙ୍କ ପୂର୍ବପୁରୁଷ ମଣିପୁର, ଆସାମ ଓ ବର୍ମାରେ ଯୁଦ୍ଧ କରିଥିଲେ ଏବଂ ପରାସ୍ତ ହୋଇଥିଲେ । ସାମୟିକ ଭାବରେ ପରାସ୍ତ ହୋଇ ଶେଷରେ ବିଜୟ ଓ ଗୌରବ ହାସଲ ପାଇଁ ପଥ ଦେଖାଇ ଯାଇଥିଲେ ।''

## ଜାପାନର ଆତ୍ମ ସମର୍ପଣ ପରେ

ରେଙ୍ଗୁନରୁ ଫେରିବା ପାଇଁ ନେତାଜୀଙ୍କୁ ସ୍ୱତନ୍ତ୍ର ଗାଡି ଦିଆଯାଇଥିଲେ ମଧ୍ୟ ସେ ସେଥିରେ ନଯାଇ ଆଜାଦହିନ୍ଦ୍ ସୈନ୍ୟବାହିନୀଙ୍କ ସହିତ ଯାଉଥିଲେ ଏବଂ ଆସିଲାବେଳେ ତାଙ୍କ ଉପରେ ବିମାନରୁ ଆକ୍ରମଣ କରି ଓ ଲୁଚିଛପି ଆକ୍ରମଣ କରାଯାଇଥିଲା । ଜୁନମାସ ପ୍ରଥମ ଭାଗରେ ବ୍ୟାଙ୍କକ୍ ଦେଇ ସେ ସିଙ୍ଗାପୁରରେ ପହଞ୍ଚିଥିଲେ । ସିଙ୍ଗାପୁରଠାରେ ସ୍ୱାଧୀନତା ସଂଗ୍ରାମରେ ଜୀବନବଳି ଦେଇଥିବା ସୈନ୍ୟମାନଙ୍କ ପାଇଁ ନିର୍ମିତ ସହୀଦ୍ ସ୍ମୃତି ସ୍ତମ୍ଭର ସେ ଭିତ୍ତି ପ୍ରସ୍ତର ସ୍ଥାପନ କରିଥିଲେ । ସିଙ୍ଗାପୁର ଦଖଲ କରି ନେବାପରେ ଏହି ଭିତ୍ତି ପ୍ରସ୍ତରକୁ ସେମାନେ ଭାଙ୍ଗିଦେଇଥିଲେ । ୧୯୪୫ ଅଗଷ୍ଟ ୬ ତାରିଖରେ ଆମେରିକା ଅଚାନକ ଭାବରେ ଜାପାନ ଉପରେ ପ୍ରଥମ ପରମାଣୁ ବୋମା ବିସ୍ଫୋରଣ କରି ହିରୋସୀମା ସହରକୁ ଧ୍ୱଂସ କରିନେଲା ଏବଂ ଏହାର ଦୁଇଦିନ ପରେ ନାଗାସାକି ସହର ଉପରେ ବୋମା

ବିସ୍ଫୋରଣ କରାଗଲା । ଏହାପରେ ୧୯୪୫ ମସିହା ଅଗଷ୍ଟ ୧୫ ତାରିଖଦିନ ଜାପାନ ଆତ୍ମ ସମର୍ପଣ କରିଥିଲା । ନେତାଜୀ ଝାନ୍‌ସିରାଣୀ ମହିଳାମାନଙ୍କ ଦ୍ୱାରା ଆୟୋଜିତ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ ବସି ଦେଖୁଥିବାବେଳେ ଜାପାନ ଆତ୍ମସମର୍ପଣ କଥା ତାଙ୍କୁ ଜଣାଇ ଦିଆଯାଇଥିଲା । ସେଦିନ ନେତାଜୀ ଏକ ନିର୍ଦ୍ଦେଶନାମାରେ କହିଥିଲେ-

''ଆମ ମାତୃଭୂମିର ସ୍ୱାଧୀନତା ସଂଗ୍ରାମରେ ଆମେ ଏକ ଅଚାନକ ସଙ୍କଟ ଫଳରେ ଅଭିଭୂତ ହୋଇ ଯାଇଛୁ । ଏହି ଅନ୍ଧକାର ମୂହୂର୍ତ୍ତରେ ତୁମ୍ଭେମାନେ ଶୃଙ୍ଖଳା, ସମ୍ମାନ ଓ ଶକ୍ତିର ସହିତ ଏକ ପ୍ରକୃତ ବିପ୍ଳବୀ ସୈନ୍ୟବାହିନୀ ଭଳି କାର୍ଯ୍ୟ କର, ଭାରତ ପ୍ରତି ଅନୁରକ୍ତ ରୁହ ଏବଂ ଭାରତର ଭବିଷ୍ୟତରେ ତିଳେ ହେଲେ ସନ୍ଦିହାନ ହୁଅ ନାହିଁ । ଦିଲ୍ଲୀକୁ ବହୁ ରାସ୍ତା ପଡିଛି ଏବଂ ଦିଲ୍ଲୀ ଆମର ଶେଷ ଲକ୍ଷ୍ୟ । ଭାରତ ଅବିଳମ୍ୱେ ମୁକ୍ତ ହେବ ।''

ପୂର୍ବ ଏସିଆର ଭାରତବାସୀଙ୍କ ଉଦ୍ଦେଶ୍ୟରେ ଏକ ବାର୍ତ୍ତାରେ ସେ କହିଥିଲେ - ଭାରତର ସ୍ୱାଧୀନତା ସଂଗ୍ରାମର ଏକ ଗୌରବମୟ ଅଧ୍ୟାୟ ଏବେ ଶେଷ ହୋଇଛି ଏବଂ ସେହି ଅଧ୍ୟାୟରେ ଏବଂ ସେଥିରେ ପୂର୍ବ ଏସିଆର ଭାରତୀୟମାନେ ଅବିସ୍ମରଣୀୟ ସ୍ଥାନର ଅଧିକାରୀ ହେବେ । ଆମର ଏହି ଅସ୍ଥାୟୀ ପରାଜୟରେ ହତାଶ ହୁଅନାହିଁ । ଭାରତକୁ ପରାଧୀନ କରି ରଖିବାର ଶକ୍ତି କାହାରି ନାହିଁ ।

## ରୁଷର ସାହାଯ୍ୟ ପାଇଁ ନେତାଜୀଙ୍କ ଶେଷ ଇଚ୍ଛା

ଇମ୍ଫାଲ ଯୁଦ୍ଧରୁ ହଟି ଆସିବା ପରେ ନେତାଜୀ ଜାପାନି ନୌବାହିନୀର ପ୍ରଧାନ ସେନାପତିଙ୍କ ସାକ୍ଷାତ ବେଳେ ସେ ତାଙ୍କୁ ସୂଚନା ଦେଇଥିଲେ ଯେ ଯୁଦ୍ଧର ପ୍ରତିକୂଳ ପରିସ୍ଥିତି ଦୃଷ୍ଟିରୁ ଭାରତର ସ୍ୱାଧୀନତା ସଂଗ୍ରାମରେ ସେ ସୋଭିଏଟ ରୁଷର ସାହାଯ୍ୟ ଲୋଡିବା ଉଚିତ । ମାତ୍ର ଟୋକିଓରେ ରହିଥିବା ବେଳେ ଜାପାନ ପ୍ରଧାନମନ୍ତ୍ରୀ ସେଥିପ୍ରତି ଅନୁକୂଳ ମତ ପ୍ରକାଶ କରିନଥିଲେ । ଶେଷରେ ୧୯୪୫ ଅଗଷ୍ଟ ମାସରେ ଯେତେବେଳେ ଜାପାନ ଆତ୍ମ ସମର୍ପଣ କରିବା ଜନରବ ହେଲା ନେତାଜୀ ରୁଷ ସହିତ ତାଙ୍କର ସଂପର୍କ ସ୍ଥାପନ କରିବାରେ ସାହାଯ୍ୟ କରିବା ନିମନ୍ତେ ଜାପାନ ସରକାରଙ୍କୁ ଅନୁରୋଧ କରିଥିଲେ । ଜାପାନ ସରକାର ଚାହୁଁ ନଥିଲେ ମଧ୍ୟ ଜାପାନର ସାମରିକ ଅଫିସର ଫିଲଡ୍ ମାର୍ଶାଲ ଟେରାଚି ନେତାଜୀଙ୍କୁ ଏଦିଗରେ ସାହାଯ୍ୟ କରିବାକୁ ନିଷ୍ପତ୍ତି କରିଥିଲେ । ନେତାଜୀ ସିଙ୍ଗାପୁରରୁ ସିକିଆଙ୍ଗରେ ଯାଇ ପହଞ୍ଚିଲା ପରେ ସେ ତାଙ୍କୁ ଏଥିପାଇଁ ସାହାଯ୍ୟ କରିବେ ବୋଲି କଥାବାର୍ତ୍ତା ହୋଇଥିଲା ।

## ଜାପାନରୁ ନେତାଜୀଙ୍କ ଶେଷଯାତ୍ରା

୧୯୪୫ ମସିହା ଅଗଷ୍ଟ ୧୬ ତାରିଖ ଜାପାନ ଆତ୍ମ ସମର୍ପଣ କରିବା ପରଦିନ ନେତାଜୀ ସିଙ୍ଗାପୁରଠାରୁ ବାଙ୍କକ୍‌ରେ ପହଞ୍ଚି ସେଠାରେ ସାଇଗନ ଯାତ୍ରା କରିଥିଲେ । ସାଇଗନଠାରେ ନେତାଜୀଙ୍କୁ ଜଣାଇ ଦିଆଯାଇଥିଲା ଯେ ସେ ଲେ.ଜେ. ସନମାସୁ ସିଡେଇଙ୍କ ସହିତ ମାଞ୍ଚୁରିଆରେ ଅବସ୍ଥିତ ସିକିଆଙ୍ଗକୁ ଡାଇରେକ୍ଟ ଦେଇ ଯିବା ନିମନ୍ତେ ବ୍ୟବସ୍ଥା କରାଯାଇଛି । ନେତାଜୀଙ୍କ ସହଯୋଗୀମାନେ ଅନ୍ୟ ବିମାନରେ ପରଦିନ ଯାତ୍ରା କରିବାପାଇଁ ସ୍ଥିର ହୋଇଥିଲା । ନେତାଜୀ ଜିଦ୍ କରିଥିଲେ ଯେ ତାଙ୍କ ସହିତ ହିବୁବୁର ରହମାନ ଯିବେ । ତେଣୁ ଏ ଦୁଇଜଣଙ୍କ ପାଇଁ ବିମାନରେ ସ୍ଥାନ କରିଦିଆ ଯାଇଥିଲା । ଏହା ଥିଲା ଗୋଟିଏ ବୋମାବର୍ଷଣକାରୀ ବିମାନ । ଏହି ବିମାନ ଅଗଷ୍ଟ ୧୭ ତାରିଖ ମଧ୍ୟାହ୍ନ ସମୟରେ ଟାଇପେଠାରେ ପହଞ୍ଚିଥିଲା । ସେଠାରେ ସେ ମଧ୍ୟାହ୍ନ ଭୋଜନ ଶେଷକରି ଏହି ବିମାନରେ ଗନ୍ତବ୍ୟ ସ୍ଥାନକୁ ଯାତ୍ରା କରିଥିଲେ । ଏହି ବିମାନ ଉଠିବାପରେ ପରେ ବାଁପଟକୁ ଚାଲିଯାଇ ହଠାତ ଓହ୍ଲାଇ ପଡିଥିଲା ଓ ରନ୍‌ଓୟେକୁ ଡେଇଁ ଗୋଟିଏ କାଦୁଆ ଯାଗାରେ ପଶିଯାଇ ସେଥିରେ ନିଆଁଲାଗି ଯାଇଥିଲା । ପ୍ରତ୍ୟକ୍ଷ ଦର୍ଶୀଙ୍କ ବିବରଣୀ ଅନୁଯାୟୀ ନେତାଜୀ ଓ ହବିବ୍ ବିମାନ

ଭିତରୁ ଡେଇଁ ପଡିଥିଲେ ମାତ୍ର ସେତେବେଳକୁ ନେତାଜୀଙ୍କ ପୋଷକାରେ ପେଟ୍ରୋଲ ପଡି ନିଆଁଲାଗି ଜଳୁଥିଲା । ହବିବ ନେତାଜୀଙ୍କ ପୋଷାକରୁ ନିଆଁ ଲିଭାଇବା ପାଇଁ ଯଥା ସାଧ୍ୟ ଉଦ୍ୟମ କରିଥିଲେ । ସେତେବେଳକୁ ନେତାଜୀଙ୍କ ଶରୀରର ବହୁସ୍ଥାନ ପୋଡି ଯାଇଥିଲା । ସେହି ଅବସ୍ଥାରେ ନେତାଜୀଙ୍କୁ ନିକଟବର୍ତ୍ତୀ ଡାକ୍ତରଖାନାକୁ ନିଆଯାଇଥିଲା । ଡାକ୍ତରଖାନାରେ ଡାକ୍ତର ଓ ନର୍ସମାନଙ୍କ ପ୍ରାଣପଣେ ଉଦ୍ୟମ ସତ୍ତ୍ୱେ ସେଠାରେ ନେତାଜୀଙ୍କ ପରଲୋକ ହୋଇଯାଇଥିଲା । ୧୯୪୫ ମସିହା ଅଗଷ୍ଟ ୨୩ ତାରିଖ ଦିନ ଟୋକିଓ ରେଡିଓରେ ଏହି ଘଟଣା ପ୍ରଚାର କରାଯାଇଥିଲା ଏବଂ ଟାଇହୋକୁ ଡାକ୍ତରଖାନାରେ ନେତାଜୀଙ୍କ ମୃତ୍ୟୁ ହୋଇଥିଲା ବୋଲି ଘୋଷଣା କରାଯାଇଥିଲା । ସେଠାରୁ ଫେରି ଆସିବାପରେ ନେତାଜୀ ସାଙ୍ଗରେ ଯାଇଥିବା ହବିବୁର ରହମନ୍ ଏହା ପ୍ରକାଶ କରିଥିଲେ ଯେ ନେତାଜୀଙ୍କୁ ଟାଇହୋକୁଠାରେ ସମାଧି ଦିଆଯାଇଥିଲା ଏବଂ ସେପ୍ଟେମ୍ବର ମାସ ମଧ୍ୟ ଭାଗରେ ନେତାଜୀଙ୍କ ଚିତାଭସ୍ମ ଜାପାନକୁ ନିଆଯାଇ ଟୋକିଓ ନିକଟବର୍ତ୍ତୀ ରେଙ୍କୋଜୀ ମନ୍ଦିରରେ ରଖାଯାଇଥିଲା ।

## ନେତାଜୀଙ୍କ ଭବିଷ୍ୟତବାଣୀ ସତ୍ୟରେ ପରିଣତ ହେଲା

ନେତାଜୀ ଆଜାଦହିନ୍ଦ ଫଉଜଙ୍କୁ ଇମ୍ଫାଲ ଯୁଦ୍ଧରୁ ଫେର ଆସିବା ପରେ ଯେଉଁ ନିର୍ଦ୍ଦେଶନାମା ଦେଇଥିଲେ ସେଥିରେ ଅନ୍ୟାନ୍ୟ ବିଷୟ ଭିତରେ କହିଥିଲେ ଯେ ଭାରତୀୟ ସୈନ୍ୟମାନଙ୍କର ଆନୁଗତ୍ୟ ଯୋଗୁ ବ୍ରିଟିଶ ସରକାର ସେମାନଙ୍କ ସାହାଯ୍ୟରେ ଭାରତବାସୀଙ୍କୁ ଦମନ କରି ପରାଧୀନ କରି ରଖିଛି ତେଣୁ ସେହି ଆନୁଗତ୍ୟକୁ ଛଡେଇବା ତାଙ୍କ ଅଭିଯାନର ମୁଖ୍ୟ ଉଦ୍ଦେଶ୍ୟ । ଭାରତୀୟ ଯୁଦ୍ଧବନ୍ଦୀଙ୍କୁ ନେଇ ସେ ଯେଉଁ ଆଜାଦ ହିନ୍ଦ ସୈନ୍ୟବାହିନୀ ଗଠନ କରିଥିଲେ ତଦ୍ୱାରା ଏହି ଉଦ୍ଦେଶ୍ୟ ସାଧିତ ହେବ ବୋଲି ନେତାଜୀ ଭବିଷ୍ୟତ ବାଣୀ ଶୁଣାଇଥିଲେ । ଆଜାଦ ଫଉଜଙ୍କ ବିଚାରବେଳେ ତାହା ସତ୍ୟରେ ପରିଣତ ହୋଇଥିଲା । ଯୁଦ୍ଧ ଶେଷହେବାପରେ ଆଜାଦହିନ୍ଦ ଫଉଜର ଅଫିସର ଓ ସୈନିକମାନଙ୍କ ପ୍ରତି ବ୍ରିଟିଶ ସରକାର ଅତ୍ୟାଚାର କରିଛନ୍ତି ଓ କେତେକଙ୍କୁ ଫାସି ଦିଆଯାଇଛି ବୋଲି ଭାରତରେ ଯେଉଁ ପ୍ରଚାର ହେଲା ତାହା ସମଗ୍ର ଦେଶରେ ଆଲୋଡନ ସୃଷ୍ଟି କରିଥିଲା ବିଶେଷ ଭାବରେ ବ୍ରିଟିଶ ଭାରତୀୟ ସୈନ୍ୟବାହିନୀ ଓ ନୌବାହିନୀରେ ସୈନିକମାନେ ଏଥିରେ ଉତ୍ତ୍ୟକ୍ତ ହୋଇଥିଲେ । କଂଗ୍ରେସ ନେତା ପଣ୍ଡିତ ଜବାହର ଲାଲ ନେହେରୁ ଓ ଶରତ ବୋଷ ପ୍ରମୁଖ ଏହାର ତୀବ୍ର ପ୍ରତିବାଦ କରିଥିଲେ । ଅଗଷ୍ଟ ଆନ୍ଦୋଳନର ଅବସାନ ଓ ନେତାଜୀଙ୍କ ସଶସ୍ତ୍ର ସଂଗ୍ରାମର ଅବସାନପରେ ଭାରତରେ ଯେଉଁ ଅବସାଦ ଓ ନୈରାଶ୍ୟ ଭାବ ଦେଖାଦେଇଥିଲା ଆଜାଦହିନ୍ଦ ଫଉଜଙ୍କର ଏହି ବିଚାର ସେହି ନୈରାଶ୍ୟକୁ ଦୂରକରି ଲୋକଙ୍କ ଭିତରେ ପୁଣି ଉତ୍ସାହ ଓ ସାହସ ସୃଷ୍ଟି କରିଥିଲା । ନେତାଜୀ ସୁଭାଷଚନ୍ଦ୍ରଙ୍କ ନେତୃତ୍ୱରେ ପୂର୍ବ ପ୍ରାଚ୍ୟରେ ଭାରତଭୂମି ଦଖଲ ପାଇଁ ଚାଞ୍ଚଲ୍ୟକର ଅଭିଯାନର କାହାଣି ଜଣା ପଡିବାପରେ ଅପୂର୍ବ ଉତ୍ତେଜନା ସୃଷ୍ଟି କଲେ । ନେତାଜୀ ସୁଭାଷଚନ୍ଦ୍ର ଅଭୂତ ପୂର୍ବ ଦେଶପ୍ରେମ, ସାହସ, ତ୍ୟାଗ ଓ ସଂଗଠନ ଶକ୍ତି ଦେଶବାସୀଙ୍କୁ ମୁଗ୍ଧ କରିଥିଲା, ନେତାଜୀ ଦେଶବାସୀଙ୍କ ମାନସ ପଟରେ ଶ୍ରେଷ୍ଠ ପୂଜ୍ୟନେତା ଭାବରେ ଉଭା ହେଲେ । 'ଜୟହିନ୍ଦ' ଧ୍ୱନି ଗଗନ ପବନ ପ୍ରକମ୍ପିତ ହେଲା । ସର୍ବୋପରି ଏହି ବିଚାରବେଳେ ରାଜକୀୟ ବିମାନ ବାହିନୀ ଓ ନୌବାହିନୀର ପ୍ରକାଶ ବିଦ୍ରୋହ ହେଲା । ବ୍ରିଟିଶ ଶାସନ ପ୍ରତି ଏହା ହେଲା ଏକ ପ୍ରଚଣ୍ଡ ଧକ୍କା । ସେମାନେ ଆଉ ଭାତରୀୟ ସାମରିକ ଶକ୍ତି ଉପରେ ନିର୍ଭର କରିପାରିଲେନାହିଁ । ଏହାହିଁ ଭାରତବାସୀଙ୍କୁ ବ୍ରିଟିଶ ସରକାରଙ୍କ କ୍ଷମତା ହସ୍ତାନ୍ତରକୁ ତ୍ୱରାନ୍ୱିତ କଲା । ଯୁଦ୍ଧପରେ ଏହିଭଳି ବିଦ୍ରୋହ ହେବ ବୋଲି ନେତାଜୀଙ୍କ ଭବିଷ୍ୟତ ବାଣୀ ସତ୍ୟ ହେଲା । କେବଳ ଭାରତରେ ନୁହେଁ ସମଗ୍ର ପୂର୍ବପ୍ରାଚ୍ୟରେ ଏହି ଜାଗରଣ ବ୍ରିଟିଶ ସାମ୍ରାଜ୍ୟବାଦକୁ ଦୁର୍ବଳ କରି ଦେଲା । ନେତାଜୀ ବିଶ୍ୱରେ

ସାମ୍ରାଜ୍ୟ ବାଦ ବିରୋଧୀ ଶକ୍ତିର ପ୍ରତୀକ ହୋଇ ରହିଛନ୍ତି ।

## ନେତାଜୀଙ୍କ ମୃତ୍ୟୁ ପ୍ରହେଳିକାର ଅବସାନ ଘଟୁ

ପ୍ରତ୍ୟକ୍ଷଦର୍ଶୀ ଭାବରେ ହବିବୁର ରହମାନ ନେତାଜୀଙ୍କ ମୃତ୍ୟୁ ସଂବାଦ ଜଣାଇବା ପରେ ସେଥିରେ ନେତାଜୀଙ୍କର କେତେକ ବିଶ୍ୱସ୍ତ ସହଯୋଗୀ ବିଶ୍ୱାସ କରିନଥିଲେ, ସେମାନେ ଏପର୍ଯ୍ୟନ୍ତ ସନ୍ଦେହ ମୁକ୍ତ ହୋଇ ନାହାନ୍ତି। ଏହି ଭିତରେ ୧୯୫୬ ମସିହାରେ ନେତାଜୀଙ୍କ ଶେଷ ଜୀବନ ସଂବନ୍ଧରେ ଅନୁସନ୍ଧାନ କରିବା ନିମନ୍ତେ ସାନଓ୍ୱାଜ ଖାଁ କମିଟି ଓ ୧୯୭୦ ମସିହାରେ ଖୋସଲା ଅନୁସନ୍ଧାନ କମିଟି ଭାରତ ସରକାର ଗଠନ କରିଥିଲେ ଏବଂ ଦୁଇଟି ଯାକ କମିଟି ୧୯୪୫ ଅଗଷ୍ଟ ମାସରେ ଟାଇହୋକୁ ବିମାନ ଦୁର୍ଘଟଣାରେ ନେତାଜୀ ସୁଭାଷ ଚନ୍ଦ୍ରଙ୍କର ମୃତ୍ୟୁ ହୋଇଥିଲା ବୋଲି ସେମାନେ ମତ ଦେଇଥିଲେ । ଏହାପରେ ୧୯୭୮ ମସିହାରେ ସେତେବେଳର ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ପାର୍ଲିଆମେଣ୍ଟରେ ଜଣାଇଥିଲେ ଯେ ପରବର୍ତ୍ତୀ ସମୟରେ ଯେଉଁ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ମିଳିଛି ଓ କାଗଜପତ୍ର ମିଳିଛି ସେଥିରେ ଅନୁସନ୍ଧନା କମିଟି ମତାମତରେ ସନ୍ଦେହ ଉପୁଜିଛି । ନେତାଜୀଙ୍କ ମୃତ୍ୟୁ ସଂବନ୍ଧରେ ପୁଣି ସନ୍ଦେହ ଘନୀଭୂତ ହେଲା ତେଣୁ ଜାପାନର ରେଙ୍କୋଜୀ ମନ୍ଦିରରେ ରଖାଯାଇଥିବା ନେତାଜୀଙ୍କ ଚିତାଭସ୍ମକୁ ଭାରତକୁ ଆଣିବା ପାଇଁ ବିରୋଧ କରାଯାଇଥିଲା। ନେତାଜୀ ଶେଷ ମୁହୂର୍ତ୍ତରେ ରୁଷକୁ ଯାଇ ରୁଷ ସରକାରଙ୍କ ସାହାଯ୍ୟ ଲୋଡିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଥିବାରୁ ସେ ରୁଷରେ ଥାଇ ପାରନ୍ତି ବା ସେଠାକୁ ସେତେବେଳେ ଯାଇଥାଇ ପାରନ୍ତି ବୋଲି କେତେକ ମତପ୍ରକାଶ କରିଛନ୍ତି ଓ ସେ ସଂପର୍କରେ ପୁଣି ଏକ ଅନୁସନ୍ଧାନ କମିଟି ବସାଇବାପାଇଁ ପ୍ରସ୍ତାବ ଦେଇଛନ୍ତି ।

ଇତିମଧ୍ୟରେ ନେତାଜୀଙ୍କର ଜଣେ ଆତ୍ମୀୟ ଓ ଟି.ଭି. ସଂସ୍ଥାର ପ୍ରତିନିଧି ଶ୍ରୀ ଆଶୀଷ ରାୟ ନେତାଜୀଙ୍କ ବିମାନ ଦୁର୍ଘଟଣା ପରେ ଟାଇହୋକୁ ସାମରିକ ଡାକ୍ତରଖାନାରେ ତାଙ୍କୁ ଚିକିତ୍ସା କରିଥିବା ଏବଂ ନେତାଜୀଙ୍କ ମୃତ୍ୟୁବେଳେ ଉପସ୍ଥିତଥିବା ଡାକ୍ତର ୟୋସିମିଙ୍କ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ତାଙ୍କଠାରୁ ସଂଗ୍ରହ କରି ପ୍ରକାଶ କରିଛନ୍ତି । ବିମାନ ଦୁର୍ଘଟଣାରେ ନେତାଜୀଙ୍କ ଶରୀର ଗୁରୁତର କ୍ଷତବିକ୍ଷତ ହୋଇଥିବା ଓ ତାହାଫଳରେ ତାଙ୍କର ମୃତ୍ୟୁ ଘଟିଥିବାର ତାଙ୍କର ସ୍ପଷ୍ଟ ସ୍ମରଣ ଥିବା ଡାଃ ୟୋସିମି କହିଛନ୍ତି । ଏହାପରେ ରୁଷ ସରକାର ମଧ୍ୟ ସରକାରୀ ଭାବରେ ଇତିମଧ୍ୟରେ ଘୋଷଣା କରିଛନ୍ତି ଯେ ନେତାଜୀ ସୁଭାଷଚନ୍ଦ୍ର ରୁଷକୁ ଯୁଦ୍ଧବେଳେ ଆସିନଥିଲେ କି ବର୍ତ୍ତମାନ ରୁଷରେ ସେ ନାହାନ୍ତି । ତେଣୁ ନେତାଜୀ ସୁଭାଷଚନ୍ଦ୍ରଙ୍କ ମୃତ୍ୟୁ ପ୍ରହେଳିକାର ଅବସାନ ଘଟୁ ।୪୮ ବର୍ଷ ଜୀବନକାଳ ଭିତରେ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ବ୍ୟକ୍ତିତ୍ୱ, ତାଙ୍କ ସାହସ, ଦେଶପ୍ରେମ, ତ୍ୟାଗ ଓ ସଂଗଠନ ଶକ୍ତି ପରାକାଷ୍ଠାର ଯେଉଁ ପରିଚୟ ମିଳିଥିଲା ଇତିହାସରେ ତାର ପଟ୍ଟାନ୍ତର ନାହିଁ, ସ୍ୱାଧୀନତା ସଂଗ୍ରାମର ଇତିହାସରେ ସେ ଅବିସ୍ମରଣୀୟ ହୋଇରହିବେ ।

OGP—MP—PTS (I. & P. R.) 71—1,000—16-1-1997

